# ଶୈଳବାଳା ଦାସଙ୍କ
# ଆତ୍ମଜୀବନୀ ଓ ଅନ୍ୟାନ୍ୟ ପ୍ରବନ୍ଧ

ସଂପାଦନା :
ପ୍ରଫେସର ସଚ୍ଚିଦାନନ୍ଦ ମହାନ୍ତି



# ଶୈଳବାଳା ଦାସଙ୍କ
# ଆତ୍ମଜୀବନୀ ଓ ଅନ୍ୟାନ୍ୟ ପ୍ରବନ୍ଧ

*ସଂପାଦନା*

ପ୍ରଫେସର ସଚ୍ଚିଦାନନ୍ଦ ମହାନ୍ତି



କଟକ-୨

ଶୈଳବାଳା ଦାସଙ୍କ ଆତ୍ମଜୀବନୀ ଓ ଅନ୍ୟାନ୍ୟ ପ୍ରବନ୍ଧ ।। ସଂପାଦନା ପ୍ରଫେସର ସଚ୍ଚିଦାନନ୍ଦ ମହାନ୍ତି ।। ପ୍ରକାଶକ : ଅଗ୍ରଦୂତ, ବାଙ୍କାବଜାର, କଟକ-୭୫୩୦୦୨ ।। ପ୍ରଥମ ପ୍ରକାଶ ୨୦୦୫ ।। କମ୍ପ୍ୟୁଟର ସହାୟତା : ମା' ଶାରଳା ଡି.ଟି.ପି., କଟକ-୧୪ ।। ମୁଦ୍ରଣ : ପଞ୍ଚସଖା ଅଫସେଟ୍, କଟକ ।।

ମୂଲ୍ୟ : ଟ. ୧୨୫/-

**SOILABALA DASNKA ATMAJIBANI O' ANYANYA PRABANDHA** II Written by : **Prof. Sachidananda Mohanty** II Published by : **AGRADUTA**, Banka Bazar, Cuttack-753002 II 1st Edition – **2005** II Computer Support by : **Maa Sarala D.T.P.**, Cuttack-14 II Printed by : **Panchasakha Offset**, Cuttack.

**Price : Rs.125/-**

# କୃତଜ୍ଞତା

ଉତ୍କଳର ନାରୀଶିକ୍ଷାର ବିଶିଷ୍ଟ ପ୍ରବର୍ତ୍ତିକା-
-ଶୈଳବାଳା ଦାସଙ୍କ କିଛି ମୌଳିକ ଲେଖା ଏହି ପୁସ୍ତକ ମାଧ୍ୟମରେ ପ୍ରକାଶିତ ହେବାଦ୍ୱାରା ମୋର ଅନେକ ଦିନର ସ୍ୱପ୍ନ ଆଜି ସାର୍ଥକ ହୋଇଛି । ଏହି ଅବକାଶରେ ମୁଁ ଆଗ୍ରହୀ ବନ୍ଧୁ, ଲେଖକ, ସମାଲୋଚକ ଓ ପାଠକମାନଙ୍କୁ ଧନ୍ୟବାଦ ଜଣାଉଛି ।

ବିଶେଷକରି, ପ୍ରଫେସର ଶରତ କୁମାର ମହାନ୍ତି, ପ୍ରଫେସର ସନାତନ ମହାନ୍ତି, ଡକ୍ଟର ପ୍ରତିଭା ରାୟ, ପ୍ରଫେସର ମହାପାତ୍ର ନୀଳମଣି ସାହୁ, ଅଗ୍ରଦୂତ ପ୍ରକାଶନର ଶ୍ରୀଯୁକ୍ତ ମନ୍ମଥ ପଟ୍ଟନାୟକ ଏବଂ ପାପା ମାଉସୀ, ଜାତୀୟ ପାଠାଗାର କଲିକତାର ଶ୍ରୀଯୁକ୍ତ ସାଫଲ୍ୟ ନନ୍ଦୀ ଏହାଛଡ଼ା ଶ୍ରୀ ପ୍ରଦୋଷ ମହାନ୍ତି, ଶ୍ରୀମତୀ ସନ୍ଧ୍ୟାରାଣୀ ସାହୁ ଏବଂ ଶ୍ରୀ ରାଜୀବ ସାହୁଙ୍କ ନିକଟରେ ମୁଁ କୃତଜ୍ଞ ।

ଶୈଳବାଳା ମହିଳା ମହାବିଦ୍ୟାଳୟର ଅଧ୍ୟକ୍ଷା ଡକ୍ଟର (ଶ୍ରୀମତୀ) ବୀଣା ମହାପାତ୍ରଙ୍କ ସହାୟତା ଏବଂ ମୋର ପିତା ଶ୍ରୀ ପଞ୍ଚାନନ ମହାନ୍ତି ଏବଂ ମାତା କବି ବିଦ୍ୟୁତ୍‌ପ୍ରଭାଙ୍କ ପ୍ରେରଣା ଏହି ବହିର ଉତ୍ସ ।

ହାଇଦ୍ରାବାଦ
୧ ନଭେମ୍ବର, ୨୦୦୪

ସଚ୍ଚିଦାନନ୍ଦ ମହାନ୍ତି

# ମୁଖବନ୍ଧ

## ଉପନିବେଶ ଓଡ଼ିଶାର ଶିକ୍ଷା ଓ ସମାଜସଂସ୍କାରର କାହାଣୀ : ଶୈଳବାଳା ଦାସ

ବିଂଶଶତାବ୍ଦୀର ପ୍ରାରମ୍ଭ ଓ ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟ ବେଳକୁ ସମାଜସଂସ୍କାର ସ୍ୱାଧୀନତା ଆନ୍ଦୋଳନ ଓ ନାରୀଶିକ୍ଷା କ୍ଷେତ୍ରରେ ସକ୍ରିୟ ଅଂଶଗ୍ରହଣ କରିଥିବା ଓଡ଼ିଶାର ଶିକ୍ଷିତା ମହିଳାମାନଙ୍କ ମଧ୍ୟରେ ଶୈଳବାଳା ଦାସ ଅନ୍ୟତମା। ସାଧାରଣତଃ ଆମର ଜାତୀୟ ଜୀବନରେ ଇତିହାସକୁ ବିଶେଷ ଗୁରୁତ୍ୱ ଦିଆଯାଏ ନାହିଁ। ତଥାପି ରାଜ୍ୟର ଏକ ପ୍ରତିଷ୍ଠିତ ମହିଳା ମହାବିଦ୍ୟାଳୟ ଶୈଳବାଳା ଦାସଙ୍କ ନାମରେ ନାମିତ ହୋଇଥିବାରୁ ତାଙ୍କ ନାମଟି ଆମ ସ୍ମୃତିରେ ରହିଛି। ତେବେ ତାଙ୍କର ବ୍ୟକ୍ତିତ୍ୱ ଓ ଓଡ଼ିଶା ପ୍ରତି ତାଙ୍କର ବହୁବିଧ ଅବଦାନ ସଂପର୍କରେ ଅଳ୍ପ କେତେଜଣ ମାତ୍ର ଅବଗତ ଅଟନ୍ତି। ଶୈଳବାଳାଙ୍କ ଆତ୍ମଜୀବନୀଚରିତର ମୁଖବନ୍ଧରେ ବମ୍ବେର ତତ୍କାଳୀନ ରାଜ୍ୟପାଳ ହରେକୃଷ୍ଣ ମହତାବ ଲେଖିଛନ୍ତି :

''ଶ୍ରୀମତୀ ଶୈଳାବାଳା ଦାସଙ୍କ ଜୀବନ ବିଗତ ଷାଠିଏ ବର୍ଷ କିମ୍ବା ତଦୂର୍ଦ୍ଧ... ସମୟ ଧରି ଓଡ଼ିଶାର ପ୍ରଗତି ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ। ସେ କେବଳ ମଧୁସୂଦନ ଦାସଙ୍କର ସୁପୁତ୍ରୀ ନୁହଁନ୍ତି, ପରନ୍ତୁ ତାଙ୍କର ସମସ୍ତ କାର୍ଯ୍ୟାବଳୀର ବ୍ୟକ୍ତିଗତ ସଚିବ ମଧ୍ୟ ଥିଲେ। ମଧୁବାବୁଙ୍କର ସମସ୍ତ କାର୍ଯ୍ୟ ସହିତ ଶୈଳବାଳାଙ୍କର ଅବିଭାଜ୍ୟ ସଂପର୍କ ଥିଲା। ଅର୍ଦ୍ଧଶତାବ୍ଦୀ ଧରି ମଧୁସୂଦନ ଦାସଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେ ଶିକ୍ଷା, ସମାଜ ସଂସ୍କାର ଓ ରାଜନୈତିକ ସଚେତନତା କ୍ଷେତ୍ରରେ କାର୍ଯ୍ୟ କରିଥିଲେ। ଆଜିର ଓଡ଼ିଶାରେ ଆମେ ଯାହା କିଛି ଦେଖୁଛୁ ତା'ର ପଶ୍ଚାତ୍‌ରେ ମଧୁବାବୁଙ୍କ ପରିକଳ୍ପନା ଏବଂ ତଦନୁଯାୟୀ ଶୈଳବାଳାଙ୍କ କାର୍ଯ୍ୟନିର୍ବାହର ମୌଳିକ ଭୂମିକା ରହିଛି। ବିଶେଷତଃ ଓଡ଼ିଶାର ନାରୀଶିକ୍ଷା କ୍ଷେତ୍ରରେ ଶୈଳବାଳା ମାର୍ଗଦର୍ଶକ ରୂପେ ବିବେଚିତ ହେବେ। ଆଜି ଅଶୀବର୍ଷ ବୟସରେ ପଦାର୍ପଣ କରିସାରିଥିଲେ ମଧ୍ୟ ତାଙ୍କର କ୍ରିୟାଶୀଳତା ବହୁ ଯୁବକଙ୍କଠାରୁ ଅଧିକ।''

---

• ଏହି ନିବନ୍ଧନିହିତ ସମସ୍ତ ତଥ୍ୟ ମୂଳତଃ ଶୈଳବାଳାଙ୍କ ଆତ୍ମଜୀବନୀ ପୁସ୍ତକ ଉପରେ ପର୍ଯ୍ୟବେସିତ।

''ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ସେ ଆଧୁନିକ ଓଡ଼ିଶା ପାଇଁ ଯାହା କରିଛନ୍ତି ସେଥିପାଇଁ ମୁଁ ଓ ଆମ ପିଢ଼ି ତାଙ୍କ ପ୍ରତି କୃତଜ୍ଞ''– ଡଃ. ମହତାବ୍ ଏ କଥା ସ୍ୱୀକାର କରିଥିବାବେଳେ ମନେହୁଏ ଯେପରି ସମଗ୍ର ଓଡ଼ିଶା ଶୈଳବାଳାଙ୍କ କାର୍ଯ୍ୟକୁ ପାଶୋରି ଯାଇଛି । ରାଜ୍ୟର ପ୍ରଖ୍ୟାତ ପାଠାଗାର କେତୋଟିରେ ତାଙ୍କ ରଚିତ ପୁସ୍ତକ ନାହିଁ; ଏସବୁର ଅର୍ଥ କ'ଣ ହୋଇପାରେ ? ପରବର୍ତ୍ତୀ ସମୟରେ ଓଡ଼ିଶାବାସୀଙ୍କ ସ୍ମୃତିରୁ ମଧ୍ୟ ତାଙ୍କ ସାଧନା ଓ ସିଦ୍ଧିର କାହାଣୀକୁ କିଏ ଯେପରି ପୋଛି ଲିଭାଇ ଦେଇଛି ! ଓଡ଼ିଶାର ସୁଖ୍ୟାତ ସନ୍ତାନମାନଙ୍କ ଗହଣରେ ତାଙ୍କୁ କେବଳ ''ମଧୁବାବୁଙ୍କର ପାଳିତା କନ୍ୟା''ରୂପେ ଅଭିହିତ କରାଯାଇ ଏକ କୋଣରେ ମାତ୍ର ଠିଆ କରାଇ ଯଥାର୍ଥ ସମ୍ମାନରୁ ବଞ୍ଚିତ କରାଯାଇଛି ।

ବଙ୍ଗାଳୀ ହୋଇଥିବାରୁ ଜଣେ ବହିରାଗତ ରୂପେ ତାଙ୍କୁ ଓଡ଼ିଆଙ୍କ ମୁଖ୍ୟସ୍ରୋତରୁ ବିଚ୍ଛିନ୍ନ କରିଦିଆଯାଇଥିବା ପରି ମନେହୁଏ । ଏଥିପାଇଁ ମଧ୍ୟ ତାଙ୍କର ଖ୍ରୀଷ୍ଟିଆନ୍ ଧର୍ମ ଆଂଶିକ ଭାବରେ ଦାୟୀ । ଅଥଚ ମାଳତୀ (ସେନ୍) ଚୌଧୁରୀଙ୍କ ପରି ଏକାଧିକ ବଙ୍ଗୀୟା ମହିଳା ଓଡ଼ିଶାରେ ଆଦୃତି ଲାଭ କରିଥିଲେ । ଗୋପବନ୍ଧୁ ଓ ନବକୃଷ୍ଣ ଚୌଧୁରୀଙ୍କ ପରିବାର ପରି ଗାନ୍ଧିବାଦର ଆଦର୍ଶରେ ଅନୁପ୍ରାଣୀତ ଓଡ଼ିଶାର ଏକ ବିଶିଷ୍ଟ ରାଜନୈତିକ ପରିବାରରେ ମାଳତୀ ବିବାହ କରିଥିବାରୁ ସମ୍ଭବତଃ ଓଡ଼ିଶାବାସୀଙ୍କ ଦ୍ୱାରା ଅଧିକ ଗୃହୀତ ହୋଇପାରିଥିଲେ । ଅପରପକ୍ଷରେ ଶୈଳବାଳା ରାଜନୀତିରେ ବେଶ୍ ସକ୍ରିୟ ଥିଲେ ମଧ୍ୟ ପ୍ରାଥମିକ ସ୍ତରରେ ଓଡ଼ିଶାର ପୁରପଲ୍ଲୀ ତାଙ୍କ କାର୍ଯ୍ୟଧାରାର ପରିସର ନଥିଲା । ବିଦେଶରେ ତାଙ୍କର ଇଂରାଜୀ ଶିକ୍ଷା, ସମ୍ଭ୍ରାନ୍ତ ଜୀବନଶୈଳୀ ତଥା ଆଇନଜ୍ଞ ବିଚାରପତି ଓ ବୁଦ୍ଧିଜୀବୀଙ୍କ ଗହଣରେ ତାଙ୍କର ରାଜନୈତିକ ଜୀବନ ତାଙ୍କୁ ଏକ ଭିନ୍ନ ଓ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ପ୍ରଦାନ କରିଥିଲା । ଯଦିଓ ଓଡ଼ିଶାକୁ ସେ ନିଜର ବାସସ୍ଥାନ ଓ କର୍ମଭୂମି ରୂପେ ଆଦରି ନେଇଥିଲେ, ତଥାପି ଅଧିକାଂଶ ସମୟରେ ସେ ବଙ୍ଗାଳୀରେ କଥାବାର୍ତ୍ତା କରୁଥିଲେ । ଫଳରେ ଅନିଚ୍ଛାକୃତ ଭାବରେ ସେ ସାଧାରଣ ଓଡ଼ିଆଙ୍କଠାରୁ ଦୂରେଇଗଲେ ।

(୨)

ଶୈଳବାଳାଙ୍କ ବ୍ୟକ୍ତିଗତ ଓ କର୍ମମୟ ଜୀବନ ସଂପର୍କିତ ତଥ୍ୟ ଦୁଷ୍ପ୍ରାପ୍ୟ ଏବଂ ଯାହା କିଛି ରହିଛି ତାହା ପର୍ଯ୍ୟାପ୍ତ ନୁହେଁ । ୧୯୫୬ ମସିହାରେ କଟକରୁ ଶୈଳବାଳା ନିଜେ ତାଙ୍କ ଆତ୍ମଜୀବନୀ ପୁସ୍ତକ ''ଏ ଲୁକ୍ ବିଫୋର୍ ଆଣ୍ଡ ଆଫ୍‌ଟର'' ପ୍ରକାଶ କରିଥିଲେ । ବିଭିନ୍ନ ତଥ୍ୟର ଅବତାରଣା ପାଇଁ ମୁଁ ଏହି ପୁସ୍ତକଟି ଉପରେ ଅଧିକ ନିର୍ଭର କରିଛି ଯଦିଓ ବହିଟିର ଅନେକ ବିବୃତ୍ତି ଓ ଉପସ୍ଥାପନା ବାସ୍ତବିକତା ଓ ଐତିହାସିକ ସତ୍ୟତା ଦୃଷ୍ଟିରୁ ପୁନର୍ମୂଲ୍ୟାୟନ ଆବଶ୍ୟକ କରେ ।

ଓଡ଼ିଶାର ମୁଷ୍ଟିମେୟ କେତେଜଣ ମହିଳାଙ୍କ ପରି ଶୈଳବାଳା ଆତ୍ମଜୀବନୀ ରଚନା କରିବାକୁ କାହିଁକି ଇଚ୍ଛା କଲେ ? ପୁଣି ଇଂରାଜୀରେ ? ପୁସ୍ତକର ଉପକ୍ରମରେ ସେ ଲେଖିଛନ୍ତି: "ମୋ ଜୀବନ ଓ ଅନୁଭୂତିର କେତେକ ରୋମାଞ୍ଚକର ଘଟଣାକୁ ଲିପିବଦ୍ଧ କରିବା ପାଇଁ ମୋର କେତେଜଣ ବନ୍ଧୁ ବାରମ୍ବାର କହି ଆସିଛନ୍ତି । ପରିଶେଷରେ ୮୨ ବର୍ଷ ବୟସରେ ଯେତେବେଳେ କ୍ୟାଟାରାକ୍ଟ ହେତୁ ମୋର ଦୃଷ୍ଟିଶକ୍ତି କ୍ଷୀଣ ହୋଇ ଆସିଲାଣି, ମୋର ଅନୁରୋଧ ରକ୍ଷା କରି କଲିକତାର ଜଣେ ପ୍ରିୟବନ୍ଧୁ ମୁଁ ଯାହା ଡାକିଛି ସେପରି ଲେଖିଛନ୍ତି" । (ପୃଷ୍ଠା-୧)

କଲିକତାର ଭବାନୀପୁର ନିକଟସ୍ଥ ଚକରବୀର ରୋଡ଼ରେ ୧୮୭୫ ମସିହାରେ ଶୈଳବାଳା ଜନ୍ମ ଗ୍ରହଣ କରିଥିଲେ । ଯଦିଓ ସେମାନେ ଖ୍ରୀଷ୍ଟିଆନ୍ ଥିଲେ, ତଥାପି ପରିବାରରେ କେତୋଟି ହିନ୍ଦୁ ରୀତିନୀତି ପାଳନ କରାଯାଉଥିଲା । ଯେପରି ସନ୍ତାନ ଜନ୍ମ ସମୟରେ ତା'ର ଜାତକ ପ୍ରସ୍ତୁତ କରିବା । ସେ ଏହା ମଧ୍ୟ ସୂଚନା ଦେଇଛନ୍ତି ଗ୍ରହ ନକ୍ଷତ୍ରଙ୍କ ସ୍ଥିତି ହେତୁ ସେ ମୁଣ୍ଡବିନ୍ଧା ଓ ଶଙ୍କାକୁଳତା ଭୋଗୁଥିଲେ । ତେବେ ବହୁ କ୍ଷେତ୍ରରେ ସେ ପାରଦର୍ଶିତା ଲାଭ କରିଥିଲେ ଏବଂ ସଦା ପ୍ରଫୁଲ୍ଲ ରହୁଥିଲେ । ତାଙ୍କ ଚରିତ୍ରର ଏହି ବୈଶିଷ୍ଟ୍ୟ ତାଙ୍କୁ ସାମାଜିକ ଖ୍ୟାତି ଆଣି ଦେଇଥିଲା । ଏସବୁ ତଥ୍ୟ ତାଙ୍କର ଜନ୍ମପତ୍ରିକା ବା ଜାତକରେ ଉଲ୍ଲେଖ ଥିଲା ।

ଜଣାଯାଏ, ଶୈଳବାଳାଙ୍କ ପିତା ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କରିବା ଦ୍ୱାରା ପ୍ରଚୁର ପୈତୃକ ସଂପତ୍ତିରୁ ବଞ୍ଚିତ ହୋଇଥିଲେ । ମାତା ପ୍ରସନ୍ନମୟୀ ଅସୁସ୍ଥ ରହୁଥିଲେ । ମିଦିନାପୁର ଜିଲ୍ଲାର ଏହି ମଧ୍ୟବିତ୍ତ ପରିବାରର ପାଞ୍ଚଟି ସନ୍ତାନଙ୍କ ମଧ୍ୟରେ ଶୈଳବାଳା ଥିଲେ ପିତାମାତାଙ୍କର ଜ୍ୟେଷ୍ଠ ସନ୍ତାନ । ତାଙ୍କ ସାନଭଉଣୀ ସୁଧାଂଶୁବାଳା ହାଜରା ଶିକ୍ଷାଜିଲ୍ଲା ପରିଦର୍ଶକ ଓ ରେଭେନ୍‌ସା ଗାର୍ଲସ୍ ହାଇସ୍କୁଲର ଅଧକ୍ଷା ରୂପେ ଅବସ୍ଥାପିତ ହୋଇଥିଲେ । ଶୈଳବାଳାଙ୍କ ମତରେ ତାଙ୍କ ଭଉଣୀ, "ଭାରତର ପ୍ରଥମ ମହିଳା ଓକିଲ ଥିଲେ ଏବଂ ଆଇନ୍ ବ୍ୟବସାୟ ସମ୍ବନ୍ଧୀୟ ଅଧିନିୟମ ସଂଶୋଧନରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।"

ଶୈଶବରେ ଶୈଳବାଳାଙ୍କୁ ବାଳକମାନଙ୍କର ବନ୍ଧୁତା ଭଲ ଲାଗୁଥିଲା ଏବଂ ସେ ବିଭିନ୍ନ ଦୁଃସାହସିକ କାର୍ଯ୍ୟ, ନିର୍ଭୀକତା ଓ ନିରନ୍ତର ଉଦ୍ୟମ କରିଯିବାକୁ ଭଲ ପାଉଥିଲେ । ଖେଳାଖେଳି ମୁଖ୍ୟତଃ ଘର ବାହାରର ଖେଳ ପ୍ରତି ତାଙ୍କର ବିଶେଷ ଆକର୍ଷଣ ଥିଲା । ସେ ଲେଖିଛନ୍ତି, "ମୁଁ ଗୁଣ୍ଡୁଚିମୂଷା ପରି ଗଛ ଚଢ଼ି ପାରୁଥିଲି ଏବଂ ସାନ ପିଲାମାନଙ୍କର ସାହାଯ୍ୟରେ କଞ୍ଚା ଫଳ ତୋଳୁଥିଲି । ସେହି ସାନ ସାନ ପିଲାମାନେ ମୋର ସାଙ୍ଗ ଥିଲେ ।" (ପୃଷ୍ଠା-୨) ପଡ଼ୋଶୀମାନଙ୍କର ପ୍ରାୟ ଅଧଡଜନ ସରିକି ପାଣିଟ୍ୟାଙ୍କ୍ ଗୁଡ଼ିକରେ ସନ୍ତରଣ

କରିବା ତାଙ୍କର ଅନ୍ୟତମ ପସନ୍ଦ ଥିଲା । ନିଜର ପିଲାଦିନକୁ ଶୈଳବାଳା ଜୀବନର ସ୍ୱର୍ଣ୍ଣିମ ଅଧ୍ୟାୟ ରୂପେ ଅଭିହିତ କରିଛନ୍ତି ।

ପ୍ରାରମ୍ଭରୁ ହିଁ ସାଧୁତା ଓ ସତ୍ୟଶୀଳତା ଉପରେ ଶୈଳବାଳାଙ୍କର ଅଖଣ୍ଡ ବିଶ୍ୱାସ ଥିଲା । ଥରେ ସେ ଅଶ୍ରୁପୂର୍ଣ୍ଣ ନୟନରେ ପିତାଙ୍କୁ ପ୍ରଶ୍ନ କରିଥିଲେ ତାଙ୍କ ଦ୍ୱାରା ପ୍ରସ୍ତୁତ ଖାଦ୍ୟ ସଂପର୍କରେ ବାପା ତାଙ୍କୁ କାହିଁକି ମିଛ କହିଲେ । ଯାବତୀୟ ଗୃହକାର୍ଯ୍ୟର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ଥିଲା ଏବଂ ସେ ସମସ୍ତ କାର୍ଯ୍ୟର ସୁସଂପାଦନ କରୁଥିଲେ । ଛୋଟ ଛୋଟ ଭାଇଭଉଣୀମାନଙ୍କର ସୁନ୍ଦର ଯତ୍ନ ନେଉଥିଲେ । ଘରୁ ପାଇଥିବା ଶିକ୍ଷା ତାଙ୍କୁ ପରବର୍ତ୍ତୀ ଜୀବନରେ ବିଶେଷ ସହାୟକ ହୋଇଥିଲା । ସେ ସ୍ମୃତିଚାରଣ କରିଛନ୍ତି ତାଙ୍କର ଦ୍ୱାଦଶ ଜନ୍ମତିଥିରେ ବାପା ଦେଇଥିବା 'ପାଞ୍ଚଟି ନୂଆ ରୂପା ଟଙ୍କା'ରୁ ଦୁଇଟିକୁ ପୋଷ୍ଟ ଅଫିସରେ ଏକ ଆକାଉଣ୍ଟ୍ ଖୋଲି ସେ ଜମା କରିଥିଲେ ।

ବାପାଙ୍କ ମାଧ୍ୟମରେ ଶୈଳବାଳା ମଧୁସୂଦନ ଦାସଙ୍କ ସଂସ୍ପର୍ଶରେ ଆସିଲେ । ତାଙ୍କ ବାପା ଓ ମଧୁବାବୁ ଭବାନୀପୁରର ଏଲ୍‌ଏମ୍‌ଏସ୍ କଲେଜ୍‌ରେ ଅଧ୍ୟୟନ କରୁଥିଲେ । ଛାତ୍ରାବାସର ଗୋଟିଏ କୋଠରୀରେ ଏକତ୍ର ରହୁଥିଲେ । କ୍ରମଶଃ ସେମାନଙ୍କର ବନ୍ଧୁତା ନିବିଡ଼ ହୋଇଥିଲା । ଶୈଳବାଳା ଲେଖିଛନ୍ତି ଗୋଟିଏ ଦିନରେ ଗୋଟିଏ ଚର୍ଚ୍ଚରେ ଉଭୟ ଖ୍ରୀଷ୍ଟିଆନ୍ ଧର୍ମରେ ଦୀକ୍ଷିତ ହୋଇଥିଲେ । ମଧୁବାବୁ ଜଣେ ଖ୍ରୀଷ୍ଟିଆନ୍ ମହିଳାଙ୍କୁ ବିବାହ କରିଥିଲେ ଏବଂ ସେମାନଙ୍କ ଘରେ ହିଁ ଶୈଳବାଳା ଜନ୍ମଗ୍ରହଣ କରିଥିଲେ । ପତ୍ନୀଙ୍କ ମୃତ୍ୟୁପରେ ମଧୁବାବୁ କଲିକତା ଛାଡ଼ି କଟକ ଚାଲି ଆସିଲେ ।

୧୮୮୮ ରେ ଶୈଳବାଳାଙ୍କ ପରିବାର ସିମଳାରୁ ସଦ୍ୟ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଶ୍ରୀଯୁକ୍ତ ଦାସ ସେମାନଙ୍କୁ ସାକ୍ଷାତ କରି ଶୈଳବାଳାଙ୍କୁ କନ୍ୟା ରୂପେ ଗ୍ରହଣ କରିବାର ଇଚ୍ଛା ପ୍ରକାଶ କଲେ । ଯଦିଓ ଏହା ପ୍ରଥମେ ଗ୍ରହଣୀୟ ହୋଇ ନଥିଲା,ତଥାପି ମାତାଙ୍କର ସ୍ୱର୍ଗବାସ ପରେ ୧୮୯୨ରେ ବାପା ତାଙ୍କୁ କଟକ ଆଣିଲେ । ସେ ଦ୍ୱିତୀୟ ବିବାହ କଲେ ଏବଂ ମଧୁବାବୁ ହିଁ ତାଙ୍କର ସମସ୍ତ ସନ୍ତାନସନ୍ତତିଙ୍କ ଲାଳନପାଳନ ଦାୟିତ୍ୱ ନେଲେ । ପରେ ଶୈଳବାଳାଙ୍କ ଆଇ.ଏ. ପରୀକ୍ଷା ପରେ ମଧୁବାବୁ ତାଙ୍କୁ ବିଧିବଦ୍ଧ ଭାବରେ କନ୍ୟାରୂପେ ଗ୍ରହଣ କଲେ । ଶୈଳବାଳାଙ୍କ ପାଇଁ ଏହା ଗୁରୁତ୍ୱପୂର୍ଣ୍ଣ ଘଟଣା ଥିଲା । ସେ ଲେଖିଛନ୍ତି : ''ବଙ୍ଗାଳୀ ଝିଅଟିକୁ କନ୍ୟା ରୂପେ ଗ୍ରହଣ କରିବାର ନିଷ୍ପତ୍ତି ଯେ ପିତାଙ୍କର ବୃଥା ଯାଇ ନଥିଲା ସେଥିପାଇଁ ମୁଁ ଈଶ୍ୱରଙ୍କ ନିକଟରେ କୃତଜ୍ଞ । ଓଡ଼ିଆ ଝିଅ ବଦଳରେ ବଙ୍ଗାଳୀ ଝିଅଟିକୁ କନ୍ୟା ରୂପେ ଗ୍ରହଣ କରିଥିବାରୁ ସେ ତାଙ୍କର ଓଡ଼ିଆ ବନ୍ଧୁବାନ୍ଧବ ଓ ସଂପର୍କୀୟଙ୍କ ଦ୍ୱାରା ସମାଲୋଚିତ ହୋଇଥିଲେ । ମୁଁ ତାଙ୍କର ସମସ୍ତ ଆଶା ଆକାଂକ୍ଷା ପୂରଣ କରିବାରେ ସମର୍ଥ ହୋଇଛି ବୋଲି ମୃତ୍ୟୁ ଶଯ୍ୟାରେ ସେ ସନ୍ତୋଷ ପ୍ରକାଶ କରିଥିଲେ ।'' (ପୃଷ୍ଠା-୬)

ଶୈଳବାଳା ଲଣ୍ଡନ୍ ମିଶନ୍ ଗାର୍ଲସ୍ ହାଇସ୍କୁଲରୁ ପ୍ରାଥମିକ ଶିକ୍ଷା ଲାଭ କରିଥିଲେ ଏବଂ ଆଠମାସ ପାଇଁ ସିମଳା ଯାଇଥିଲେ । ପରେ ସେ ବେଥୁନ୍ ସ୍କୁଲରେ ଭର୍ତ୍ତି ହେଲେ । କଲେଜ୍‌ରେ ସେ ବେଶ୍ ସକ୍ରିୟ ଥିଲେ ଏବଂ ବିଭିନ୍ନ କାର୍ଯ୍ୟର ନେତୃତ୍ୱ ନେଉଥିଲେ । ସେ ପ୍ରଶସ୍ତମନା ଓ ନିରପେକ୍ଷ ବିଚାରସଂପନ୍ନ ଥିଲେ । ଖ୍ରୀଷ୍ଟିଆନ୍ ଛାତ୍ରୀ ହୋଇଥିବାରୁ ରବିବାର ଦିନ ଛାତ୍ରୀ ନିବାସର ବ୍ରାହ୍ମଣ ଅନ୍ତେବାସିନୀମାନଙ୍କ ସହ ମିଳାମିଶା ନ କରିବାକୁ ଏକଦା କଲେଜ୍‌ର ଅଧ୍ୟକ୍ଷା ପରାମର୍ଶ ଦେବାରୁ ଶୈଳବାଳା ତାହା ମାନିବାକୁ ମନା କରିଥିଲେ । ଅଧିକନ୍ତୁ ''ସେମାନଙ୍କଠାରୁ ମଧ୍ୟ ଶିକ୍ଷାଲାଭ କରୁଥିବାରୁ ସେ ମିଳାମିଶା ଅବ୍ୟାହତ ରଖିଥିଲେ । (ପୃଷ୍ଠା-୭)

କିଛି ଦିନର ଅସୁସ୍ଥତା ପରେ ଶୈଳବାଳା କଲିକତାର ମିଡିଲ୍‌ଟନ୍ ଷ୍ଟ୍ରିଟ୍ ସ୍ଥିତ ଲରେଟୋ କନ୍‌ଭେଣ୍ଟରେ ଯୋଗ ଦେଲେ । ସେଠାରେ ସେ ସାଂପ୍ରଦାୟିକ ପ୍ରଭାବ ମୁକ୍ତ ସିଷ୍ଟରମାନଙ୍କ ସଂସ୍ପର୍ଶରେ ଆସିଲେ । ଦୁର୍ଭାଗ୍ୟବଶତଃ ସେ ବର୍ଷ ସେ ବିଶ୍ୱବିଦ୍ୟାଳୟର ଆଇ.ଏ. ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ । ତା'ପରେ ତାଙ୍କୁ କଲିକତାର ଫ୍ରି ସ୍କୁଲ ଷ୍ଟ୍ରିଟ୍‌ରେ ଥିବା ଡିଭୋଟନ୍ କଲେଜ୍‌କୁ ପଠାଇ ଦିଆଗଲା । ଏବଂ ପାର୍କଷ୍ଟ୍ରିଟ୍‌ରେ ଥିବା ୟଙ୍ଗ୍ ଉଇମେନ୍‌ସ୍ ଇନ୍‌ଷ୍ଟିଚ୍ୟୁଟ୍‌ର ହଷ୍ଟେଲରେ ସେ ରହିଲେ । କିଛିବର୍ଷ ପରେ ସେଠାକାର ଜଣେ ମୁସ୍‌ଲିମ୍ ସହପାଠୀ ଖ୍ୱାଜା ମହମ୍ମଦ ନୂରଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ସେତେବେଳକୁ ନୂର୍ ମହାଶୟ ବିଶ୍ୱବିଦ୍ୟାଳୟର କୁଳପତି ଓ ବିଧାନସଭାର ସଭାପତି ଥା'ନ୍ତି ।

ପରବର୍ଷ ଶୈଳବାଳା ଆଇ.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ମାତ୍ର ବାପା ମଧୁବାବୁଙ୍କର ଇଚ୍ଛା ସତ୍ତ୍ୱେ ସେ ଆଉ ବି.ଏ. ନ ପଢ଼ିବାକୁ ସ୍ଥିର କଲେ । ସେତେବେଳକୁ ପିତା ଅସୁସ୍ଥ ରହୁଥା'ନ୍ତି ଏବଂ ଚିକିତ୍ସା ନିମନ୍ତେ ଇଂଲଣ୍ଡ୍ ଯାତ୍ରା କରିବାକୁ ତାଙ୍କୁ ପରାମର୍ଶ ଦିଆଯାଇଥାଏ । ଶୈଳବାଳା ପିତାଙ୍କ ନିର୍ଦ୍ଦେଶକ୍ରମେ କଟକ ଆସି ଶ୍ରୀମତୀ ଓ ଶ୍ରୀଯୁକ୍ତ ଅନାମ ଚରଣ ଦାସ ହେପାଜତ୍‌ରେ ରହିଲେ ।

୧୮୯୭ ମସିହାରେ ମଧୁବାବୁ ଇଂଲଣ୍ଡ୍ ଯାତ୍ରା କଲେ । କଟକଠାରେ ଶୈଳବାଳାଙ୍କର ଉତ୍ତମ ଯତ୍ନ ନିଆଯାଉଥିଲା । ସେତେବେଳେ ସହଶିକ୍ଷା ଅନୁଗୃହୀତ ହେଉ ନଥାଏ । ମାତ୍ର ଅତ୍ୟୁତ୍ସାହୀ ଶୈଳବାଳା ବେଥୁନ୍ କଲେଜ୍‌ର ତାଙ୍କର ଜଣେ ପୂର୍ବତନ ସହପାଠିନୀ କୁମାରୀ ଇସାବେଲା ସାମୁଏଲ୍‌ଙ୍କୁ ରାମେଶ୍ୱରବାଇ କଲେଜ୍‌ରେ ନାମ ଲେଖାଇବାକୁ ପ୍ରବର୍ତ୍ତାଇଲେ । ସେମାନଙ୍କ ଉଦ୍ୟମ ସଫଳ ହେଲା । କଲେଜ୍ ଶିକ୍ଷା ଯଦିଓ ଶୈଳବାଳାଙ୍କୁ ବହୁ ସାହାଯ୍ୟ କରିଥିଲା, ତଥାପି ତାଙ୍କର ''ପ୍ରକୃତ ଶିକ୍ଷା'' ମଧୁବାବୁଙ୍କ ପାଠାଗାରରୁ ହିଁ ଆରମ୍ଭ ହେଲା ବୋଲି ସେ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ସେଠାରେ ସେ ଏକ ନିର୍ଦ୍ଦିଷ୍ଟ ବର୍ଗର ଲୋକଙ୍କୁ ଭେଟିଲେ ଏବଂ ବିଭିନ୍ନ ବିଷୟରେ ଆଳାପ ଆଲୋଚନା କରିପାରିଲେ ।

ଆତ୍ମଜୀବନୀରେ ଏପରି ଅନେକ ଘଟଣାର ଅବତାରଣା କରାଯାଇଛି ଯହିଁରୁ ଶୈଳବାଳାଙ୍କ ସ୍ୱଭାବର ସାହସ, ନିର୍ଭୀକତା ଏବଂ ଅନ୍ୟାୟ, ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରିବାର ପ୍ରବଣତା ପ୍ରତିଫଳିତ ହୁଏ । ଉଦାହରଣସ୍ୱରୂପ ଗୋଟିଏ ଘଟଣାର ଅବତାରଣା କରାଯାଇପାରେ; ୧୮୯୮ରେ ବେଙ୍ଗଲ୍-ନାଗପୁର ରେଳପଥ (BNR) ରେଳପଥ ସଂଯୋଗୀକରଣ ପାଇଁ ସେତୁବନ୍ଧ ନିର୍ମାଣ କାର୍ଯ୍ୟ ଆରମ୍ଭ କଲେ । ପୂର୍ବରୁ କଲିକତାରୁ କଟକ ଆସିବାକୁ ହେଲେ ଷ୍ଟିମର ଯୋଗେ ପ୍ରଥମେ ଚାନ୍ଦପାଲ ଘାଟରୁ କୋଲାଘାଟ ପର୍ଯ୍ୟନ୍ତ ଆସିବାକୁ ପଡୁଥିଲା । ଦିନେ କୋଲାଘାଟରେ ଶୈଳବାଳା ଟ୍ରେନ୍ ଧରିଲେ; ମାତ୍ର ଫାଷ୍ଟକ୍ଲାସ୍ କଂପାର୍ଟମେଣ୍ଟରେ ଥିବା ଦଳେ ୟୁରୋପୀୟ ସହଯାତ୍ରୀ ମନ୍ତବ୍ୟ ଦେଲେ, ''ଜଣେ ସ୍ଥାନୀୟା ମହିଳାଙ୍କ ସହିତ ମେମ୍‌ସାହେବମାନେ ଏକତ୍ର ଯିବାକୁ ପସନ୍ଦ କରିବେ ନାହିଁ ।'' ଶୈଳବାଳା ଏହାର ଦୃଢ଼ ପ୍ରତିବାଦ କଲେ, ସେମାନଙ୍କ ମଧ୍ୟରେ ବାଦାନୁବାଦ ହେଲା । ଏତିକି ନୁହେଁ ସେ ଜିଦ୍ କରିଲେ ଯେ ତାଙ୍କ ସହିତ ତାଙ୍କ ଆୟାମାନେ ମଧ୍ୟ ସେହି ପ୍ରଥମଶ୍ରେଣୀ କଂପାର୍ଟମେଣ୍ଟରେ ଯାତ୍ରା କରିବେ । ଶୈଳବାଳାଙ୍କ ଦୃଢ଼ୋକ୍ତି ଥିଲା, ''ମୁଁ ଜଣେ ସ୍ଥାନୀୟ ମହିଳା ଏବଂ ସେଥିପାଇଁ ମୁଁ ଗର୍ବିତ ।'' (ପୃଷ୍ଠା-୧୨) ଏହି ଘଟଣା ବର୍ଣ୍ଣିତ ପରିଚ୍ଛେଦର ଶେଷଆଡ଼କୁ ସେ ଉଲ୍ଲେଖ କରିଛନ୍ତି, ଯେଉଁ ଇଂରେଜମାନେ ସେପରି ସାଂପ୍ରଦାୟିକ ପ୍ରସଙ୍ଗ ଉତ୍‌ଥାପନ କରିଥିଲେ ସେମାନଙ୍କ ମଧ୍ୟରେ କଟକ ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଜିଲ୍ଲାଜଜ୍ ରହିଥିଲେ ।

ପୁନଶ୍ଚ ପୁସ୍ତକଟିରେ ଆହୁରି ଅନେକ ଘଟଣା ସନ୍ନିବେଶିତ ଯେଉଁଥିରୁ ଶୈଳବାଳାଙ୍କର ମାନସିକ ପ୍ରବୃତ୍ତି ଓ ହୃଦୟବତ୍ତାର ପରିଚୟ ମିଳିଥାଏ । ଏହା ସତ୍ୟ ଯେ ସେସବୁ ବ୍ୟାଖ୍ୟା ସ୍ୱବ୍ୟକ୍ତିତ୍ୱ ବର୍ଦ୍ଧନ ନିମନ୍ତେ ଅତିରଞ୍ଜନ ପରି ମନେହୁଏ । ଏକ ପ୍ରକାରର ଆତ୍ମଶ୍ଳାଘା ଓ ସ୍ୱବିବେଚିତ ଯଥାର୍ଥତାକୁ ପ୍ରାଧାନ୍ୟ ଦେଉଥିବା ପରି ଲାଗେ । ବାସ୍ତବ ଘଟଣା ସହିତ ସେସବୁର ତୁଳନା କଷ୍ଟସାଧ୍ୟ ମନେହୁଏ । ତଥାପି ଶୈଳବାଳାଙ୍କ ସମକାଳୀନ ବହୁ ବ୍ୟକ୍ତି ତାଙ୍କର ଅସାଧାରଣ ଆଦର୍ଶବାଦିତା ଓ ସାଧୁତା ସଂପର୍କରେ ନିଃସନ୍ଦେହ ।

ଆତ୍ମଜୀବନୀର 'Entry into the Jagannath Temple' ଅଧ୍ୟାୟରେ ଶୈଳବାଳା ପୁରୀର ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରବେଶ କରିଥିବାରୁ ଉପୁଜିଥିବା ବିବାଦ ଓ ଗୁଞ୍ଜରଣ ସଂପର୍କରେ ନିଷ୍କପଟ ଭାବରେ ଉଲ୍ଲେଖ କରିଛନ୍ତି । ପ୍ରତ୍ୟକ୍ଷ ଅନୁଭବୀ ହୋଇ ମଧ୍ୟ ତାଙ୍କର ପର୍ଯ୍ୟବେକ୍ଷଣ ତାଙ୍କ ମନର ଯାବତୀୟ ଭାବନାର ପ୍ରତିଫଳନ ପରି ମନେହୁଏ; ନିଷେଧାଦେଶ ସହିତ ସାଲିସ୍ କରିଯିବା ପୁଣି ଧର୍ମାନ୍ଧତା ଓ କୁସଂସ୍କାରକୁ ବିରୋଧ କରିବାର ଇଚ୍ଛା ଏବଂ ଶେଷରେ ବିବାଦୀୟ ପରିସ୍ଥିତି ସୃଷ୍ଟି କରିଥିବାରୁ ଓ ପିତାଙ୍କୁ ବଦନାମ କରିଥିବାର ଅନୁତାପ ଆଦି ଭାବ ଓ ଭାବନାର ସମ୍ମିଶ୍ରଣ ସେ ଅଧ୍ୟାୟ ।

ଆଧୁନିକ ଓଡ଼ିଶା ଇତିହାସର କେତୋଟି ଘଟଣା ମଧ୍ୟ ଶୈଳବାଳାଙ୍କ ଆତ୍ମଜୀବନୀରେ ସନ୍ନିବେଶିତ । ଯେପରି ସେ ଲେଖିଛନ୍ତି, ୧୯୦୩ ମସିହାରେ ବାପା ମଧୁସୂଦନ ଦାସ କଂଗ୍ରେସ ତ୍ୟାଗ କରି ମୟୂରଭଞ୍ଜ ମହାରାଜା, ଅନ୍ୟ କେତେଜଣ ହିତୈଷୀ ଓ ସମର୍ଥକମାନଙ୍କ ସହାୟତାରେ ଉତ୍କଳ ସମ୍ମିଳନୀ ଗଠନ କଲେ । ସେହିପରି ଶୈଳବାଳା ମଧ୍ୟ ପିତାଙ୍କଠାରୁ ଆର୍ଥିକ ସାହାଯ୍ୟ ପାଇ ଗଢ଼ିଲେ ଉତ୍କଳ ଯୁବ ସଂଗଠନ । ପରବର୍ତ୍ତୀ ସମୟର ଛାତ୍ରମାନଙ୍କଠାରେ ଯେଉଁ ଆତୁରତା ପରିଲକ୍ଷିତ ହୁଏ ଶୈଳବାଳା କିନ୍ତୁ ତାହାର ବ୍ୟତିକ୍ରମ ଥିଲେ ।

ଏହାପରେ ଆସେ ତାଙ୍କର ଇଂଲଣ୍ଡ ଯାତ୍ରାକାଳୀନ ଅଭିଜ୍ଞତା । ୧୭ ସେପ୍ଟେମ୍ବର ୧୯୦୬ ମସିହାରେ ଦୁଇଜଣ ଶିକ୍ଷାନବିସ କୁମାରୀ ସରଳାବାଳା ମିତ୍ର ଓ ଫାତିମା ଫାୟଗୀଙ୍କ ସହିତ ସେ ଲଣ୍ଡନରେ ପହଞ୍ଚିଥିଲେ । ମାରିଆ ଗ୍ରେ ଟ୍ରେନିଂ କଲେଜ୍‌ରେ କିନ୍ତୁ ତାଙ୍କର ପ୍ରଥମ ଅଭିଜ୍ଞତା ଉତ୍ସାହଜନକ ନଥିଲା । ସେ ଲେଖିଛନ୍ତି, ''ସୂର୍ଯ୍ୟାଲୋକ-ଉଦ୍‌ଭାସିତ ଭାରତ ଭୂମିର ଉଜ୍ଜ୍ୱଳତା ନିକଟରେ ସବୁକିଛି ସେଠାରେ ଅନ୍ଧକାରମୟ, ଉଦାସ ଓ ଅସ୍ତିତ୍ୱହୀନ ମନେହେଉଥିଲା । ମାରିଆ ଗ୍ରେ ଟ୍ରେନିଂ କଲେଜ୍ ହଷ୍ଟେଲର କୋଠରୀ ଭିତରକୁ ପଶିଯାଇଁ ଆମେ ତିନିଜଣ ବିଛଣାରେ ପଡ଼ି ପିଲାଙ୍କ ପରି କାନ୍ଦି ଉଠିଲୁ ।'' (ପୃଷ୍ଠା—୨୧)

ସେହି ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଶୈଳବାଳା ଦୁଇଟି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଏବଂ ଭାରତ ଫେରି ଆସିଲେ । ଶେଷ ପରୀକ୍ଷା ଦେବା ପାଇଁ ତହିଁ ପରବର୍ଷ ସେ ପୁଣି ଇଂଲଣ୍ଡ ବାହୁଡ଼ି ଯିବା କଥା, ମାତ୍ର ଏସବୁ ବିଷୟରେ ଅଧିକ କିଛି ତାଙ୍କ ଆତ୍ମଜୀବନୀରୁ ବୁଝିହୁଏ ନାହିଁ ।

ଇଂଲାଣ୍ଡ ରହଣିକାଳରେ ଇଂରେଜମାନଙ୍କ ଜୀବନଚର୍ଯ୍ୟା, ସମାଜ ଓ ସଂସ୍କୃତି ସଂପର୍କରେ ସେ ବହୁ ପ୍ରବନ୍ଧ ରଚନା କରିଥିଲେ । ତନ୍ମଧ୍ୟରୁ କେତୋଟି ବିଶ୍ୱନାଥ କରଙ୍କର ସୁଖ୍ୟାତ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଇଥିଲା । ଏକ ଅଜଣା ସଂସ୍କୃତି ସହିତ ନିଜ ସଂସ୍କୃତିର ତୁଳନାତ୍ମକ ତଥା ନିରପେକ୍ଷ ବିଶ୍ଳେଷଣ ଏସବୁ ପ୍ରବନ୍ଧରେ ଦେଖିବାକୁ ମିଳେ । ଆବଶ୍ୟକ ସ୍ଥଳରେ ଶୈଳବାଳା ଇଂରେଜମାନଙ୍କୁ ପ୍ରଶଂସା କରିଥିବାବେଳେ ଭାରତବର୍ଷରେ ସେମାନଙ୍କ ଔପନିବେଶବାଦକୁ ଦୃଢ଼ ସମାଲୋଚନା ମଧ୍ୟ କରିଛନ୍ତି । ଇଂରେଜମାନଙ୍କ ବିଚାରାଳୟ, ରାଜତନ୍ତ୍ର, ହାଉସ୍ ଅଫ୍ ଲର୍ଡ଼ସ, ଇଣ୍ଡିଆ ଅଫିସ୍, ବକିଂମ୍‌ହୋମ ପ୍ୟାଲେସ୍ ଏବଂ ମହାମାନ୍ୟ ପୋପ୍‌ଙ୍କ ସହିତ ତାଙ୍କ ସାକ୍ଷାତକାର ବିଷୟରେ ସେ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । କେତୋଟି ଖ୍ରୀଷ୍ଟିଆନ୍ ପରିବାରରେ ସେ ସପ୍ତାହାନ୍ତ ଦିନଗୁଡ଼ିକ ଅତିବାହିତ କରି ପରିବାରରେ ନିଯୁକ୍ତ ସେବକମାନଙ୍କ ସମୟାନୁବର୍ତ୍ତିତା ଓ ବିଶ୍ୱସ୍ତତାରେ ପ୍ରୀତ ହୋଇ ସେମାନେ ଆମ ଦେଶ ତୁଳନାରେ ଭଲ ବୋଲି ଶୈଳବାଳା ମନ୍ତବ୍ୟ ଦେଇଛନ୍ତି ।

କଟକ ଫେରି ଆସି ନାରୀଶିକ୍ଷାର ପ୍ରସାର କ୍ଷେତ୍ରରେ ସେ ଉଦ୍ୟମ ଆରମ୍ଭ କରିଦେଲେ । ଏହି ମର୍ମରେ ସେ ରେଭେନ୍‌ସା ଗାର୍ଲସ୍ ସ୍କୁଲ୍‌ର ଅଧକ୍ଷା ପଦ ଅଳଙ୍କୃତ କରି

ବିଶେଷକ୍ଷମତାପ୍ରାପ୍ତ ସଂପାଦିକା ରୂପେ ବିଦ୍ୟାଳୟର ବିକାଶ ନିମନ୍ତେ ଶିକ୍ଷାବିଭାଗୀୟ କର୍ତ୍ତୃପକ୍ଷଙ୍କ ଉଦାସୀନତା ବିରୋଧରେ ସଂଗ୍ରାମ କରିଥିଲେ । ପରବର୍ତ୍ତୀ ସମୟରେ ତାଙ୍କରି ବଦାନ୍ୟତା ହେତୁ ଓଡ଼ିଶାରେ ପ୍ରଥମ ମହିଳା ବିଦ୍ୟାଳୟ ପ୍ରତିଷ୍ଠା ହୋଇଥିଲା । ୧୯୧୪ ମସିହାରେ ରାଞ୍ଚିଠାରେ ଅନୁଷ୍ଠିତ ନାରୀଶିକ୍ଷା ଶୀର୍ଷକ ଏକ ଅଧିବେଶନକୁ ସେ ତତ୍କାଳୀନ ସରକାରଙ୍କ ଦ୍ୱାରା ନିମନ୍ତ୍ରିତ ହୋଇଥିଲେ । ହାଇସ୍କୁଲରେ ଶିକ୍ଷକତା କରିବାକୁ ହିନ୍ଦୁ ବିଧବାମାନଙ୍କୁ ସେ ତାଲିମ୍ ପ୍ରଦାନ କରିବା ଆରମ୍ଭ କରିଥିଲେ । ଏତାଦୃଶ ଅବଦାନର ସ୍ୱୀକୃତି ସ୍ୱରୂପ ଓଡ଼ିଶା ଓ ବିହାରର ତତ୍କାଳୀନ ଶେଷ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର୍ ଏଡ୍‌ୱାର୍ଡ୍ ଗେଟ୍ ଶୈଳବାଳାଙ୍କୁ 'କାଇଜର-ଇ-ହିନ୍ଦ' ସ୍ୱର୍ଣ୍ଣପଦକରେ ଭୂଷିତ କରିବାକୁ ସ୍ଥିର କରିଥିଲେ, ମାତ୍ର ଶୈଳବାଳା ତାହା ଗ୍ରହଣ କରିବାକୁ ମନା କରିଦେଇଥିଲେ । ସର୍ବଭାରତୀୟ ମହିଳା ଅଧିବେଶନରେ ମଧ୍ୟ ସେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ ଏବଂ ପୁରୀ ଓ ବାଲେଶ୍ୱରରେ ଶାଖା ସଙ୍ଗଠନ ଆରମ୍ଭ କରିଥିଲେ ।

ବିହାରର ପାଟନା ମଧ୍ୟ କିଛିକାଳ ଧରି ଶୈଳବାଳାଙ୍କ କର୍ମଭୂମି ହୋଇଥିଲା । ସେ ଏସବୁର ଅବତାରଣ କରି ଓଡ଼ିଶାରେ ବିତାଇଥିବା ତାଙ୍କ ଜୀବନ ସହିତ ତୁଳନା ମଧ୍ୟ କରିଛନ୍ତି । ସେ ଅନୁଭବ କରିଥିଲେ ତାଙ୍କ ରାଜ୍ୟ ତୁଳନାରେ ବିହାରର ଜନସାଧାରଣ ଅଧିକ ରକ୍ଷଣଶୀଳ । ରାଜ୍ୟର ବିଭିନ୍ନ ଘଟଣାବଳୀ; ଯଥା : ସୋନ୍‌ପୁର ମେଳା, ୱେଲ୍‌ସ୍ ଯୁବରାଜଙ୍କ ପରିଦର୍ଶନ, ସରକାରୀ ଭବନରେ ପର୍ଦ୍ଦା ପାର୍ଟି, ବିହାର ଓଡ଼ିଶା ମହିଳା ପରିଷଦ, ଲେଡି ଷ୍ଟିଭେନ୍‌ସନ୍ ହଲଙ୍କ ପାଇଁ ପାଣି ସଂଗ୍ରହ ଓ ବିହାର ଓଡ଼ିଶା ବିଧାନ ପରିଷଦ ସଂପର୍କରେ ବିଭିନ୍ନ ତଥ୍ୟ ଆତ୍ମଜୀବନୀରେ ଉଲ୍ଲେଖ କରାଯାଇଛି । ଭାରତର ପ୍ରଥମ ସ୍ୱତନ୍ତ୍ର କ୍ଷମତାପ୍ରାପ୍ତ ମାଜିଷ୍ଟ୍ରେଟ୍ ରୂପେ ସ୍ୱଅଭିଜ୍ଞତାର କଥା ମଧ୍ୟ ସେ ଲିପିବଦ୍ଧ କରିଛନ୍ତି । ତନ୍ମଧ୍ୟରୁ କେତୋଟି ଘଟଣା ବେଶ୍ ହାସ୍ୟରସାତ୍ମକ ଓ ଗମ୍ଭୀର; ଯେପରି ମୁଖ୍ୟ ବିଚାରପତି ଓ ରାଜ୍ୟପାଳଙ୍କ ପୂଝାରୀକୁ ଜୋରିମାନା, ଇଲେକ୍‌ସନ୍ ପିଟିସନ୍ କେଶ୍ ଓ ଦେବାଳିଆ ହେଲେ ତା'ର ବିଚାର ପ୍ରମୁଖ । 'University Activities' ବିଭାଗରେ ସିନେଟ୍‌କୁ ଫେଲୋ ରୂପେ ତାଙ୍କର ମନୋନୟନ, ମ୍ୟୁଜିକ ବୋର୍ଡ଼ ଗଠନ, ସିଣ୍ଡିକେଟ୍‌କୁ ତାଙ୍କର ନିର୍ବାଚନ, ଭାଇସରାୟଙ୍କର ପରିଦର୍ଶନ, ଆଇ.ଏ. ଛାତ୍ରୀଙ୍କ ପାଇଁ ବୃତ୍ତି ପ୍ରଦାନ, ଗୃହବିଜ୍ଞାନ-ଅର୍ଥନୀତି-ସ୍ୱାସ୍ଥ୍ୟରକ୍ଷା, ସମ୍ବନ୍ଧୀୟ ବୋର୍ଡ଼ ଗଠନ ବିଷୟାଦି ଶୈଳବାଳା ଉଲ୍ଲେଖ କରିଛନ୍ତି ।

SPCA ର ଗଠନ ଏବଂ ସେ କିପରି ମ୍ୟୁନ୍‌ସିପାଲ୍ କମିଶନ ରୂପେ ନିର୍ବାଚିତ ହେଲେ ତାହା ମଧ୍ୟ ଆତ୍ମଜୀବନୀରେ ବର୍ଣ୍ଣିତ । ରେଳବିଭାଗ ଓ ଜେଲ୍ ସଂକ୍ରାନ୍ତ କାର୍ଯ୍ୟକଳାପରେ ଅଂଶଗ୍ରହଣ କରି ରାଜନୈତିକ ବନ୍ଦୀ ଓ ଅସହଯୋଗ ଆନ୍ଦୋଳନ ସହ ସଂପୃକ୍ତ ତାଙ୍କ ସାହସିକତାର ବିବରଣୀ ମଧ୍ୟ ଶୈଳବାଳା ଆତ୍ମଜୀବନୀରେ ଉପସ୍ଥାପନ କରିଛନ୍ତି । ଲାଲ୍ ଶାଢ଼ୀ ପିନ୍ଧି ସାଇମନ୍ କମିଶନକୁ ବିରୋଧ ପ୍ରଦର୍ଶନର ବର୍ଣ୍ଣନା ବେଶ୍ ରୋମାଞ୍ଚକର । ସେ ପ୍ରକାଶ କରିଛନ୍ତି, ମହିଳାମାନଙ୍କ ନିମନ୍ତେ ସ୍ଥାନ ସଂରକ୍ଷଣକୁ ସେ ସମର୍ଥନ କରୁଥିଲେ ଏବଂ

ମହିଳାମାନଙ୍କ ନିମନ୍ତେ ସଂରକ୍ଷିତ ନ ଥିବା ଭିନ୍ନ ନିର୍ବାଚନ ମଣ୍ଡଳୀକୁ ସେ ସମର୍ଥନ କରୁ ନଥିଲେ । (ପୃଷ୍ଠା-୧୧୯)

ଏହାପରେ ଶୈଳବାଳା ୧୯୨୭ ମସିହାରେ ତାଙ୍କର କଟକ ପ୍ରତ୍ୟାବର୍ତ୍ତନର ସ୍ମୃତିଚାରଣ କରିଛନ୍ତି । ସେତେବେଳେ ମଧୁବାବୁଙ୍କ ଘର ନିଲାମ୍ ହେବ ବୋଲି ସ୍ଥିର ହୋଇସାରିଥାଏ । ସେ ଋଣଗ୍ରସ୍ତ ହୋଇ ପଡ଼ିଥା'ନ୍ତି ଏବଂ ତାଙ୍କ ଶିଳ୍ପ ପ୍ରତିଷ୍ଠାନ ଭାଙ୍ଗି ପଡ଼ିଥାଏ । ଶିଳ୍ପ ପ୍ରତିଷ୍ଠାନର ପୁନରୁତ୍‌ଥାନ ନିମନ୍ତେ ସେ ଗାନ୍ଧୀଙ୍କ ସାହାଯ୍ୟ ପାଇଁ ୧୯୨୪ରେ ଅହମ୍ମଦାବାଦ୍ ଯାତ୍ରା କରିଥିଲେ ।

ଗାନ୍ଧିଜୀ ଯେତେବେଳେ କଟକ ଆସିଲେ, ତାଙ୍କ ପାଖେ ପାଖେ ରହି ସୁବିଧା ଅସୁବିଧା ବୁଝିବାକୁ ଶୈଳବାଳାଙ୍କୁ ପିତା ପରାମର୍ଶ ଦେଇଥିଲେ । କଟକ ଟାଉନହଲ୍‌ଠାରେ ଗୋଟିଏ ସଭାର ଆୟୋଜନ କରାଯାଇଥିଲା ଏବଂ ମାତ୍ର ଷାଠିଏ ଟଙ୍କା ସଂଗୃହୀତ ହୋଇଥିଲା ଯାହା ଗାନ୍ଧୀଙ୍କୁ ନିରାଶ କରିଥିଲା । ସେଦିନ ରାତିରେ ମଧୁବାବୁଙ୍କ ଘରେ ମହାତ୍ମାଗାନ୍ଧୀ ଶୈଳବାଳାଙ୍କୁ ଚରଖା ଚଲାଇବାକୁ ପରାମର୍ଶ ଦେଇଥିଲେ ଏବଂ ଓଡ଼ିଶାର ମହିଳାମାନଙ୍କ ମଧ୍ୟରେ ଚରଖା ପ୍ରଚଳନ କରିବାକୁ କହିଥିଲେ । ମାତ୍ର ଶୈଳବାଳା ଏଥିରେ ସମ୍ମତ ହେଲେ ନାହିଁ । ଭାରତର ଅର୍ଥନୈତିକ ସଙ୍କଟ ଯେ ଚରଖା ଦ୍ୱାରା ଦୂର ହୋଇ ପାରିବ ଏ ବିଶ୍ୱାସ ତାଙ୍କର ନାହିଁ ବୋଲି ମତ ଦେଲେ । ଯେଉଁ କୃଷକମାନେ ତୁଳା ଉତ୍ପାଦନ କରୁଛନ୍ତି ଏବଂ ନିଜ ପାଇଁ ଶାଢ଼ୀ, ଧୋତି, ଗାମୁଛା ଇତ୍ୟାଦି ବୁଣୁଛନ୍ତି ସେମାନଙ୍କ ପାଇଁ କେବଳ 'ଚରଖା' ଉପଯୁକ୍ତ ହୋଇପାରେ, ମଧ୍ୟବିତ୍ତ ଓ ଉଚ୍ଚମଧ୍ୟବିତ୍ତଙ୍କ ପାଇଁ ନୁହେଁ । (ପୃଷ୍ଠା-୧୩୨) ସେହିପରି ଖଦଡ଼ ବ୍ୟବହାରକୁ ପ୍ରୋତ୍ସାହନ ଦେବା ସପକ୍ଷରେ ମଧ୍ୟ ସେ ନ ଥିଲେ । ସେ କହିଥିଲେ, ''ମୁଁ ଦୁଃଖୀତ; ଏ ପ୍ରସ୍ତାବ ମୋତେ ଉତ୍ସାହଜନକ ଲାଗୁନାହିଁ । ଆପଣ ଯଦି ବିଦେଶୀ ଦ୍ରବ୍ୟ ବର୍ଜନକଥା ଆନ୍ତରିକତାର ସହ କହୁଛନ୍ତି,ତେବେ ମୋଟରକାର୍, ଘଣ୍ଟା ଇତ୍ୟାଦି ବ୍ୟବହାର କରୁଛନ୍ତି କାହିଁକି ? ଆପଣ ସେସବୁ ମଧ୍ୟ ବର୍ଜନ କରିବା ଉଚିତ । କିନ୍ତୁ ବର୍ତ୍ତମାନ ପରିସ୍ଥିତିରେ ଆମେ ସେପରି କରିପାରିବା ନାହିଁ ।'' ଗାନ୍ଧିଜୀ ପ୍ରୀତ ହେଲା ପରି ଜଣାପଡ଼ିଲେ ନାହିଁ, ମାତ୍ର କଂଗ୍ରେସର ସଭ୍ୟ ହେବାପାଇଁ ତାଙ୍କୁ ଆମନ୍ତ୍ରଣ ଜଣାଇଥିଲେ । ଶୈଳବାଳା ତାହାକୁ ସ୍ୱାଗତ କରି ସାବରମତୀ ଯିବାପାଇଁ କଥା ଦେଇଥିଲେ ।

୧୯୪୧ ବେଳକୁ ଶୈଳବାଳା କଟକରେ, ଅନେକ ସମାଜ ସଂସ୍କାରମୂଳକ କାର୍ଯ୍ୟ ହାତକୁ ନେଇଥା'ନ୍ତି । ତନ୍ମଧ୍ୟରୁ ମାତୃତ୍ୱ ଓ ଶିଶୁବିକାଶ ଯୋଜନା ଅନ୍ୟତମ । ଓଡ଼ିଶା ନାରୀ ସେବା ସଂଘ ମଧ୍ୟ ସେ ପ୍ରତିଷ୍ଠା କରିଥିଲେ । ସ୍ୱାଧୀନତା ପରେ ସରକାରଙ୍କର ବହୁ କଂଗ୍ରେସ ନେତା ଓଡ଼ିଶା ପରିଦର୍ଶନ କରିଥିଲେ । ସେମାନଙ୍କ ମଧ୍ୟରୁ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍‌ଙ୍କ ଗସ୍ତ ସମୟରେ ଓଡ଼ିଶାର ତତ୍‌କାଳୀନ ରାଜ୍ୟପାଳ ଡଃ. କାଟ୍‌ଜୁଙ୍କ ଦ୍ୱାରା ଆୟୋଜିତ ଏକ

ଚା' ଭୋଜିରେ ଶୈଳବାଳା ଯୋଗ ଦେଇଥିଲେ ଏବଂ ଡଃ. କାଟ୍‌ଜୁ ତାଙ୍କୁ ସର୍ଦ୍ଦାର୍ ବଲ୍ଲଭ ଭାଇ ପଟେଲ୍‌ଙ୍କ ସହିତ ପରିଚୟ କରାଇ ଦେଇଥିଲେ । ସେହିପରି ଲର୍ଡ୍ ମାଉଣ୍ଟବେଟେନ୍ ଓ ଲେଡି ମାଉଣ୍ଟବେଟେନ୍‌ଙ୍କ ଓଡ଼ିଶା ଆଗମନ ସମୟରେ ମଧ୍ୟ ଶୈଳବାଳା ସେମାନଙ୍କୁ ସାକ୍ଷାତ୍ କରିଥିଲେ । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ଓଡ଼ିଶା ଆଗମନ କଥା ମଧ୍ୟ ସେ ଆତ୍ମଜୀବନୀରେ ଲିପିବଦ୍ଧ କରିଛନ୍ତି । ୧୯୪୭ ନଭେମ୍ବର ମାସରେ ଶୈଳବାଳାଙ୍କ ପୌରୋହିତ୍ୟରେ ଭାରତୀୟ ଜାତୀୟ ମହିଳା ପରିଷଦର ଦ୍ୱିବାର୍ଷିକ ସମ୍ମିଳନୀ କଟକଠାରେ ଅନୁଷ୍ଠିତ ହୋଇଥିଲା ।

ପୁସ୍ତକର ପଞ୍ଚମ ଅଧ୍ୟାୟରେ କଟକ ସଂପର୍କରେ ବିଭିନ୍ନ କଥା ଶୈଳବାଳା ଲେଖିଛନ୍ତି; ଯୌବନାବସ୍ଥାରେ ସେ ଦେଖିଥିବା କଟକ ଏବଂ ପରବର୍ତ୍ତୀ ସମୟରେ ସେ ଆହରଣ କରିଥିବା ବିଭିନ୍ନ ଅଭିଜ୍ଞତାର କଥା ଏହି ଅଧ୍ୟାୟରେ ବର୍ଣ୍ଣିତ । ପାଟନା ଓ ସେଠାକାର ବନ୍ଧୁବର୍ଗ ତଥା ଶତ୍ରୁମାନଙ୍କ କଥା ମଧ୍ୟ ସେ ଲେଖିବାକୁ ଭୁଲି ନାହାଁନ୍ତି । ବିଶେଷତଃ, ଜୀବନରେ ଅନୁଭବିଥିବା ଅକୃତଜ୍ଞତା ତାଙ୍କୁ କଷ୍ଟ ଦେଇଥିଲା । ଯେପରି, ସେ ଲେଖିଛନ୍ତି, ''ଗୋଟିଏ କଥା ନ କହି ମୁଁ ରହି ପାରିବିନି ଯେ ଶିକ୍ଷା ଓ ସମାଜସଂସ୍କାର କ୍ଷେତ୍ରରେ ମୁଁ ଓଡ଼ିଶାପାଇଁ କାର୍ଯ୍ୟ କରିଥିଲେ ମଧ୍ୟ, ଓଡ଼ିଶାର ଜନସାଧାରଣଙ୍କଠାରୁ ଆଦର ପାଇନାହିଁ । ମୋର ଜାତୀୟତା ସମ୍ଭବତଃ ପ୍ରତିବନ୍ଧକ ହୋଇଛି । ମୋ ପ୍ରତି ମୋ ରାଜ୍ୟର ଅବହେଳାର ଏହା ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।'' (ପୃଷ୍ଠା-୧୬୧) ସେମିତି ଜଣେ ସଂପର୍କୀୟଙ୍କ ଅକୃତଜ୍ଞ ଆଚରଣ କଥା ମଧ୍ୟ ସେ ଉଲ୍ଲେଖ କରିଛନ୍ତି । ତେବେ ପର ମୁହୂର୍ତ୍ତରେ ପ୍ରକାଶ କରନ୍ତି : ''ଅନେକଙ୍କ ଠାରୁ ଅପ୍ରତ୍ୟାଶିତ ସ୍ନେହ, ସହୃଦୟତା ଓ କୃତଜ୍ଞତା ମଧ୍ୟ ସେ ଲାଭ କରିଥିଲେ ।''

୧୯୩୪ ବେଳକୁ ମଧୁବାବୁ ଖୁବ୍ ଦୁର୍ବଳ ହୋଇପଡ଼ିଥାନ୍ତି । ବିହାରର ଭୂମିକଂପ ପୀଡ଼ିତଙ୍କ ପାଇଁ ରିଲିଫ୍ ସଂଗ୍ରହ କରିବାକୁ ଯାଇଥିବା ଶୈଳବାଳା ସେହିବର୍ଷ ଜାନୁଆରୀରେ ସେଠାରୁ ଫେରିଆସିଲେ । ଅସୁସ୍ଥ ପିତାଙ୍କ ପାଖେ ପାଖେ ସେ ରହୁଥା'ନ୍ତି । ବାପାଙ୍କ ମୃତ୍ୟୁଶଯ୍ୟାରେ ଶୈଳବାଳା ତାଙ୍କୁ କଥା ଦେଇଥିଲେ ଯେ ଶେଷ ପର୍ଯ୍ୟନ୍ତ ସେ ଓଡ଼ିଶାରେ ରହିବେ । ''ଜୀବନର ଶେଷ ସମୟ ମୁଁ ଏହିଠାରେ ହିଁ ଅତିବାହିତ କରିବି । ଅନ୍ୟାନ୍ୟ କାର୍ଯ୍ୟ ପରିସରକୁ ସୀମିତ କରିଦେବି । ୧୯୩୪ ମସିହା ଫେବୃୟାରୀ ୪ ତାରିଖ ଅପରାହ୍ନ ଗୋଟାଏ ବେଳକୁ ମଧୁବାବୁ ଇହଲୀଳା ସମ୍ବରଣ କଲେ । ଶୈଳବାଳା ପିତାଙ୍କୁ ଦେଇଥିବା ବଚନ ରକ୍ଷା କଲେ । ସେ ମଧୁବାବୁଙ୍କ ସ୍ମୃତିରକ୍ଷା ପାଇଁ ମଧ୍ୟ ବହୁ ଉଦ୍ୟମ କରିଥିଲେ । ପିତାଙ୍କ ମୃତ୍ୟୁ ପରେ ଶୈଳବାଳାଙ୍କର ସାମାଜିକ, ରାଜନୈତିକ ଓ ପ୍ରଶାସନିକ କାର୍ଯ୍ୟ ପୁଣି ପୂର୍ବପରି ଚାଲିଲା । ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ମଧୁସ୍ମୃତି ପାଇଁ ତାଙ୍କର ଉଦ୍ୟମ, ମହିଳା ମହାବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ମଧୁବାବୁଙ୍କର ବାସଗୃହ ଓ ସଂପତ୍ତି ଦାନ କରିବାକୁ ତାଙ୍କୁ ସ୍ମରଣୀୟ କରିପାରିଛି । ସେ ଓ ସାନଭଉଣୀ ସୁଧାଂଶୁବାଳା ସେମାନଙ୍କ ପିତାଙ୍କ ଆଇନ୍ ସଂକ୍ରାନ୍ତୀୟ ପାଠାଗାରଟିକୁ ମଧ୍ୟ ଓଡ଼ିଶା ହାଇ କୋର୍ଟକୁ ଉପହାର ସ୍ୱରୂପ ପ୍ରଦାନ କରିଥିଲେ ।

ଆତ୍ମଜୀବନୀରେ ସଂଯୋଜିତ ବହୁ ନେତୃସ୍ଥାନୀୟ ବ୍ୟକ୍ତିତ୍ୱ ଯେପରି ଆଇନଜ୍ଞ ଡଃ. ସଚ୍ଚିଦାନନ୍ଦ ସିହ୍ନା ଓ ସରଦାର୍ ବଲ୍ଲଭଭାଇ ପଟେଲ୍ ଇତ୍ୟାଦିଙ୍କ ସହିତ ଶୈଳବାଳାଙ୍କ ପତ୍ରାଳାପରୁ ଓଡ଼ିଶା ପ୍ରତି ତାଙ୍କର ଅଙ୍ଗୀକାରବଦ୍ଧତାର ପରିଚୟ ମିଳିଥାଏ । ବିଶେଷତଃ ଷଢ଼େଇଖଳା ଓ ଖରସୁଆଁ ମିଶ୍ରଣ ପ୍ରସଙ୍ଗ ଉଲ୍ଲେଖନୀୟ । ଓଡ଼ିଶାବାସୀଙ୍କ ପ୍ରବଳ ବିରୋଧ ସତ୍ତ୍ୱେ ଏହି ଦୁଇ ଆଦିବାସୀ ଭୂଖଣ୍ଡ ବିହାର ହାତକୁ ଚାଲିଗଲା ।

ଶୈଳବାଳାଙ୍କ ଜୀବନର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା, ୧୯୫୨ ମସିହାରେ ସେ ରାଜ୍ୟସଭା ସଦସ୍ୟ ହେଲେ । ସାଂସଦ ଭାବରେ ତାଙ୍କର ବିଭିନ୍ନ କାର୍ଯ୍ୟ ସଂପର୍କରେ ସେ ତାଙ୍କ ଆତ୍ମଜୀବନୀଚରିତରେ ଉଲ୍ଲେଖ କରିଛନ୍ତି । ୧୯୫୨ ମସିହା ଏପ୍ରିଲ୍ ୨୮ ତାରିଖରେ ତାଙ୍କ ନାମରେ ନାମିତ ହୋଇ ଶୈଳବାଳା ମହିଳା କଲେଜ୍ ପ୍ରତିଷ୍ଠିତ ହେଲା । ତାଙ୍କ ଅଭିଭାଷଣରେ ସେ ମଧୁବାବୁଙ୍କ ମହାନତା, ପିତା ହିସାବରେ ତାଙ୍କ ସହିତ ନିଜର ସଂପର୍କ, ଓଡ଼ିଶାର ମହିଳାମାନଙ୍କ ପାଇଁ ମଧୁସ୍ମୃତିର ମହତ୍ତ୍ୱର କଥା କହିଥିଲେ ଏବଂ ବକ୍ତବ୍ୟ ଶେଷ କରିବାକୁ ଯାଇ ଆଶା ପ୍ରକଟ କରିଥିଲେ :

‘‘ଏହି ମହାବିଦ୍ୟାଳୟରେ ଯେଉଁ ଝିଅମାନେ ଶିକ୍ଷାଲାଭ କରିବେ ଏବଂ ଭବିଷ୍ୟତ ପିଢ଼ିର ଜନନୀ ହେବେ ସେମାନେ ସର୍ବଦା ସେ ମଣିଷଟିକୁ ସ୍ମରଣ କରିବେ, ଯିଏ ତା'ର ସମଗ୍ର ଜୀବନ ଓଡ଼ିଶାର ସେବାରେ ଉତ୍ସର୍ଗ କରିଥିଲା । ସେମାନେ ମଧ୍ୟ ନିଜ ମାତୃଭୂମିର ସେବା ଲାଗି ଜୀବନ ଉତ୍ସର୍ଗ କରିବେ ।’’ (ପରିଶିଷ୍ଟ ପୃଷ୍ଠା-୨୦)

ଶୈଳବାଳା ଜୀବନବ୍ୟାପୀ ନାରୀଶିକ୍ଷାର ପ୍ରସାର ଦିଗରେ ଉତ୍ସାହୀ ଥିଲେ । ତାଙ୍କର ସମସ୍ତ ରଚନା ଏସବୁର ନିଦର୍ଶନ । ଏହି ମର୍ମରେ ‘‘Ways of Spreading Women's Education’’ ଶୀର୍ଷକରେ ସେ ଏକ ଉପାଦେୟ ଓଡ଼ିଆ ନିବନ୍ଧ ରଚନା କରିଛନ୍ତି । ଏହି ରଚନାଟିରେ ସେ ରାଜ୍ୟରେ ନାରୀଶିକ୍ଷାର ପ୍ରସାର ପ୍ରଣାଳୀ ଓ ତା'ର ଆବଶ୍ୟକତା ସଂପର୍କରେ ନିଜସ୍ୱ ଅଭିମତ ପ୍ରଦାନ କରିଛନ୍ତି । ଶିକ୍ଷକମାନଙ୍କୁ ଉପଯୁକ୍ତ ତାଲିମ, ସ୍ଥାନୀୟ ଅଧିବାସୀଙ୍କ ସହାୟତାରେ ପାଠ୍ୟପୁସ୍ତକ ପ୍ରସ୍ତୁତି, ଶିକ୍ଷାବିଭାଗର ସହଯୋଗ, ପରଦା ପ୍ରଥାର ବିମୋଚନ ଓ ଜାତିଭେଦର ବିଲୋପ ତଥା ବିଧବାମାନଙ୍କୁ ଶିକ୍ଷାଦାନ ଆଦି ପ୍ରସଙ୍ଗ ଉପରେ ଶୈଳବାଳା ଉକ୍ତ ପ୍ରବନ୍ଧରେ ଗୁରୁତ୍ୱାରୋପ କରିଛନ୍ତି । ସେ ଉଲ୍ଲେଖ କରିଛନ୍ତି, ‘‘ଶିକ୍ଷୟିତ୍ରୀମାନଙ୍କର ଆଚରଣ ମାତୃସୁଲଭ ହେବା ଉଚିତ । ଛାତ୍ରମାନଙ୍କ ସହିତ ଉତ୍ତମ ସଂପର୍କ ରକ୍ଷା କରି ପାରିଲେ ନାରୀଶିକ୍ଷା ଜନ ସମର୍ଥନ ଓ ସହଯୋଗ ଲାଭ କରିବ ।’’

ପରିଶେଷରେ ଏହା ସ୍ପଷ୍ଟ ଯେ ରାଜ୍ୟରେ ନାରୀଶିକ୍ଷାର ପ୍ରସାର ପାଇଁ ଉଲ୍ଲେଖନୀୟ ଅବଦାନ ହେତୁ ଶୈଳବାଳା ଆମର ସ୍ମରଣୀୟ ହୋଇ ରହିବେ । ୧୯୬୮ ମସିହାରେ ତାଙ୍କର ମୃତ୍ୟୁ ଘଟିଲା ।

ପ୍ରଫେସର ସଚ୍ଚିଦାନନ୍ଦ ମହାନ୍ତି



# ସୂଚିପତ୍ର





# ଜନସାଧାରଣରେ ସ୍ତ୍ରୀଶିକ୍ଷା ବିସ୍ତାରର ଉପାୟ

ଆଜିକାଲି ଆମ୍ଭମାନଙ୍କ ସମାଜରେ ସ୍ତ୍ରୀଶିକ୍ଷାର ଆବଶ୍ୟକତା ଆମ୍ଭେମାନେ ବିଶେଷରୂପେ ଅନୁଭବ କରୁଅଛୁଁ । ଏହି ଅଭାବ ଧନୀ ଓ ନିର୍ଧନ ଉଭୟ ଶ୍ରେଣୀର ଲୋକେ ଅନୁଭବ କରୁଅଛନ୍ତି । ସମସ୍ତ ଭାରତବର୍ଷରେ ନବଜାଗରଣ ଦେଖୁଅଛୁଁ ଏବଂ ଦେଶର ପଲ୍ଲୀଗ୍ରାମମାନଙ୍କରେ ମଧ୍ୟ ଲୋକେ ସ୍ତ୍ରୀଶିକ୍ଷା ସକାଶେ ଚିତ୍କାର କରୁଅଛନ୍ତି ।

୧୮୫୪ ଖ୍ରୀଷ୍ଟାବ୍ଦରେ ଗଭର୍ଣ୍ଣମେଣ୍ଟ ପ୍ରଥମେ ସ୍ତ୍ରୀଶିକ୍ଷାର ଆବଶ୍ୟକତା ଅନୁଭବ କଲେ; ମାତ୍ର ବଡ଼ ଦୁଃଖର କଥା ଯେ, ଗତ ବାଷଠି ବର୍ଷ ମଧ୍ୟରେ ସ୍ତ୍ରୀଶିକ୍ଷାର ଫଳ ବଡ଼ ସନ୍ତୋଷଜନକ ହୋଇନାହିଁ । ବର୍ତ୍ତମାନ ମଧ୍ୟ ସ୍ତ୍ରୀଶିକ୍ଷା ପାଉଥିବା ବାଳକ ବାଳିକାଙ୍କର ଅନୁପାତ ୫ଜଣରେ ଏକଜଣ ଅଟେ । ଆମ୍ଭେମାନେ ଅବଶ୍ୟ କୃତଜ୍ଞତା ସହିତ ସ୍ୱୀକାର କରିବୁ ଯେ ଗଭର୍ଣ୍ଣମେଣ୍ଟ ଏଥିରେ ହାତ ଦେଇନଥିଲେ ପୂର୍ବେ ସ୍ତ୍ରୀଶିକ୍ଷା ଯେପରି ଅବସ୍ଥାରେ ଥିଲା, ବର୍ତ୍ତମାନ ମଧ୍ୟ ସେହିପରି ଥାନ୍ତା । ଗଭର୍ଣ୍ଣମେଣ୍ଟ ଚେଷ୍ଟାକରି ନଥିଲେ ବର୍ତ୍ତମାନ ଯେଉଁ ସାମାନ୍ୟ ଉନ୍ନତି ହୋଇଅଛି, ତାହା ମଧ୍ୟ ହୋଇ ନଥାନ୍ତା । ତଥାପି ଏହା ଦେଖାଇ ଦେବା ଉଚିତ ଯେ, ବାଳକମାନଙ୍କ ଶିକ୍ଷାରେ ଗଭର୍ଣ୍ଣମେଣ୍ଟ ଯେପରି ଚେଷ୍ଟା କରିଅଛନ୍ତି, ତହିଁର ଦଶମାଂଶ ସୁଦ୍ଧା ବାଳିକାମାନଙ୍କ ଶିକ୍ଷାରେ କରି ନାହାନ୍ତି ।

ସ୍ତ୍ରୀ ଏବଂ ବାଳିକାମାନଙ୍କର ଶିକ୍ଷା ଏକ ଗୁରୁତର ବିଷୟ । ସୀମାବଦ୍ଧ ସଂସ୍କାର, ରୀତିନୀତି ଜାତିପ୍ରଥା ଓ ଧର୍ମ ପ୍ରଭୃତି ଏହାକୁ ଅଧିକତର ଜଟିଳ କରିଅଛନ୍ତି । ସେହି ସବୁ ବିଷୟରେ ଅବତାରଣା କରି ଏଠାରେ ଆପଣମାନଙ୍କର ସମୟ ନଷ୍ଟ କରିବୁ ନାହିଁ । କି ଉପାୟରେ ସ୍ତ୍ରୀଶିକ୍ଷା ଜନସାଧାରଣରେ ପ୍ରଚଳିତ ହେବ, ଏହାହିଁ ଆଜି ଆମ୍ଭମାନଙ୍କର ଆଲୋଚନାର ବିଷୟ । ଆହୁରି ମଧ୍ୟ କି ଉପାୟରେ ଗଭର୍ଣ୍ଣମେଣ୍ଟ ସ୍ତ୍ରୀଶିକ୍ଷାର ଅଭାବ ପୂରଣ କରି ପାରିବେ ଏବଂ କି ଉପାୟରେ ପ୍ରଚଳିତ ଶିକ୍ଷାପଦ୍ଧତିର ଦୋଷ ସଂଶୋଧନ କରିବାକୁ ହେବ, ଏହା ଆମ୍ଭମାନଙ୍କର ଆଲୋଚନାର ବିଷୟ । ସମସ୍ତ ଭାରତବର୍ଷରେ ସ୍ତ୍ରୀଶିକ୍ଷା ଘେନି ବିଶେଷ ଆନ୍ଦୋଳନ ଲାଗିଅଛି । ଏପରି କି, ବିଲାତ ନିବାସୀ ସ୍ତ୍ରୀଶିକ୍ଷାର ପକ୍ଷପାତି କେତେକ ସମ୍ଭ୍ରାନ୍ତ ବ୍ୟକ୍ତି ଓ ମହିଳାମଧ୍ୟ ଏ ବିଷୟ ନେଇ ଭାରତସଚିବଙ୍କ ସହିତ ଗତବର୍ଷ ସାକ୍ଷାତ କରିଥିଲେ । ଗତ ଡିସେମ୍ବର ମାସ ୩୧ ତାରିଖରେ ଆମ୍ଭେମାନେ ବୋମ୍ବାଇଠାରେ ଥିବା ସମୟରେ ମହିଳାମାନଙ୍କର ଗୋଟିଏ ସଭା ହୋଇ ସ୍ତ୍ରୀଶିକ୍ଷା ସମ୍ବନ୍ଧରେ ବଡ଼ଲାଟ ସାହେବଙ୍କ ନିକଟକୁ ଆବେଦନପତ୍ର ପଠାହୋଇଥିଲା । ସୁଖର କଥା, ଏହିସବୁ ଆନ୍ଦୋଳନଦ୍ୱାରା ଭାରତ ଗଭର୍ଣ୍ଣମେଣ୍ଟଙ୍କ ଦୃଷ୍ଟି ସ୍ତ୍ରୀଶିକ୍ଷା ପ୍ରତି ଆକୃଷ୍ଟ ହୋଇଅଛି ଏବଂ ପ୍ରଚଳିତ ପଦ୍ଧତିରେ କି କି ତ୍ରୁଟି

ଅଛି, ତାହା ବିବେଚନା କରିବା ସକାଶେ ପ୍ରାଦେଶିକ ଗଭର୍ଣ୍ଣମେଣ୍ଟଙ୍କ ନିକଟକୁ ପତ୍ର ଆସିଅଛି । ଭାରତ ଗଭର୍ଣ୍ଣମେଣ୍ଟ ସ୍ୱୀକାର କରିଅଛନ୍ତି ଯେ ଆମ୍ଭ ଏ ଦେଶରେ ପ୍ରଚଳିତ ସ୍ତ୍ରୀଶିକ୍ଷା ପଦ୍ଧତି ଆଶାନୁରୂପ ଶୃଙ୍ଖଳାବଦ୍ଧ ହୋଇନାହିଁ । ଯେଉଁମାନେ ଏ ବିଷୟ ଭଲରୂପେ ଚିନ୍ତାକରନ୍ତି ନାହିଁ, ସେମାନେ ମନେ କରିପାରନ୍ତି ଯେ, ଆମ୍ଭ ଦେଶରେ ସ୍ତ୍ରୀଶିକ୍ଷା ଭଲରୂପେ ଗତି କରୁଅଛି ଏବଂ ତାହାର ଉନ୍ନତି ସକାଶେ କିଛି ପରିବର୍ତ୍ତନ ଆବଶ୍ୟକ ନାହିଁ । ଏଥିରେ ଯେ କୌଣସି ତ୍ରୁଟି ଅଛି, ଏହା ମଧ୍ୟ ସେମାନେ ସ୍ୱୀକାର କରନ୍ତି ନାହିଁ । ଏଣୁ ଏ ସମ୍ବନ୍ଧରେ ଜନସାଧାରଣଙ୍କ ସାହାଯ୍ୟ କିମ୍ବା ସହାନୁଭୂତି ସେମାନେ ପାନ୍ତି ନାହିଁ ।

ଯେତେଦିନଯାଏ ସାଧାରଣ ଲୋକଙ୍କର ସାହାଯ୍ୟ ଓ ସହାନୁଭୂତି ଶିକ୍ଷାବିଭାଗ ଲାଭ କରିନପାରିବେ, ତେତେଦିନ ଯାଏ ଏ ଦେଶରେ ସ୍ତ୍ରୀଶିକ୍ଷା ଅଗ୍ରସର ହୋଇ ପାରିବ ନାହିଁ । ସ୍ତ୍ରୀଶିକ୍ଷା ସାଧାରଣ ଲୋକଙ୍କ ମତ ଉପରେ ନିର୍ଭର କରେ ।

୧୮୮୨ ମସିହାରେ ଯେଉଁ ଶିକ୍ଷା ସମିତି ବସିଥିଲା, ତହିଁରେ ସେମାନେ ଏହିପରି ମତ ଦେଇଥିଲେ ଯେ, ଜନସାଧାରଣଙ୍କ ମତ ଗ୍ରହଣ ନକରି ସ୍ତ୍ରୀଶିକ୍ଷା ବିସ୍ତାରର ଯେ ନାନା ପ୍ରତିବନ୍ଧକ ଅଛି, ତାହା ଦୂର କରାଯାଇ ପାରିବ ନାହିଁ । ସୁତରାଂ ଦେଖାଯାଏ, ସାଧାରଣ ମତକୁ ଅବହେଳା କଲେ ଚଳିବ ନାହିଁ । ମାତ୍ର ଆଜିଯାଏ ଶିକ୍ଷାବିଭାଗ ଆଦୌ ଏଥିପ୍ରତି ଦୃଷ୍ଟି ଦେଇନାହାନ୍ତି । ଧର୍ମଗତ, ଜାତିଗତ ଓ ସାମାଜିକ ରୀତିନିତି ଏବଂ ସଂସ୍କାରଜନିତ ନାନା ପାର୍ଥକ୍ୟ ଥିବା ସ୍ଥଳେ ସମସ୍ତ ପ୍ରଦେଶରେ ଏକ ପ୍ରଣାଳୀରେ ପ୍ରାଇମେରୀ ଶିକ୍ଷାଦେବାର କଳ୍ପନା କରିବା ନିତାନ୍ତ ଅସଙ୍ଗତ ଅଟେ । ଯେଉଁ ଦେଶରେ ଏସବୁ ପ୍ରତିବନ୍ଧକ ନାହିଁ, ସେଠାରେ ଏପ୍ରକାର ଶିକ୍ଷାପ୍ରଣାଳୀ ଚଳିପାରେ । ଉଦାହରଣ ସ୍ୱରୂପ ଇଂଲଣ୍ଡକୁ ନିଆଯାଇ ପାରେ । ମାତ୍ର ଆମ୍ଭ ଏଦେଶରେ ଯେଉଁ ପ୍ରତିବନ୍ଧକ ଅଛି, ସେ ଦେଶରେ ଯଦିବା ତାହାସବୁ ନାହିଁ, ତଥାପି ସେଠାରେ ଏକ ନିୟମରେ ସବୁଠାରେ ଶିକ୍ଷା ଦିଆଯାଏ ନାହିଁ । ସେଠାରେ ଭିନ୍ନ ଭିନ୍ନ ସ୍କୁଲ ସକାଶେ ଭିନ୍ନ ଭିନ୍ନ ପାଠ୍ୟ ନିର୍ବାଚନ କରାଯାଏ । ତହିଁର କାରଣ ଏହି ଯେ, ଲୋକମାନଙ୍କର ସାମାଜିକ ଅବସ୍ଥାନୁରୂପ ସେମାନଙ୍କର ଶିକ୍ଷାପ୍ରଣାଳୀ ସ୍ଥିର କରାଯାଏ ଏବଂ ସେହି କାରଣରୁ ଜନସାଧାରଣ ତହିଁର ପକ୍ଷପାତୀ ହୋଇଥାନ୍ତି । ମାତ୍ର ଆମ୍ଭେମାନେ ଯଦିଚ ଏକ ପ୍ରଦେଶରେ ବାସ କରୁଅଛୁଁ, ତଥାପି ରୀତିନୀତି ଓ ସାମାଜିକ ସଂସ୍କାର ପ୍ରଭୃତି ଘେନି ଆମ୍ଭମାନଙ୍କ ମଧ୍ୟରେ ନାନା ବୈଷମ୍ୟ ଅଛି । ତାହାହେଲେ ହେଁ ଶିକ୍ଷାବିଭାଗର ନିୟମାନୁସାରେ ବିହାର, ଓଡ଼ିଶା, ଛୋଟନାଗପୁର ସମସ୍ତ ସ୍ଥାନରେ ପ୍ରାଥମିକ ଶିକ୍ଷା ଏକ ପ୍ରଣାଳୀରେ ଚାଳିତ । କିନ୍ତୁ ସୁଖର କଥା, ଏଥିପ୍ରତି ଭାରତ ଗଭର୍ଣ୍ଣମେଣ୍ଟଙ୍କ ଦୃଷ୍ଟି ପଡ଼ିଅଛି । ଏ ସମ୍ବନ୍ଧରେ ଭାରତ ଗଭର୍ଣ୍ଣମେଣ୍ଟ ପ୍ରାଦେଶିକ ଗଭର୍ଣ୍ଣମେଣ୍ଟଙ୍କୁ ଯେଉଁ ପତ୍ର ଦେଇଅଛନ୍ତି, ତହିଁର କିୟଦଂଶ ଉଦ୍ଧୃତ କଲୁଁ । ''ଏଥିରେ କିଛି ସନ୍ଦେହ ନାହିଁ ଯେ, ସାଧାରଣଙ୍କ ମତରେ ଭାରତବର୍ଷର ବାଳିକାମାନେ ନିଜ ନିଜ ମାତୃଭାଷାରେ ଲେଖି ପଢ଼ି ପାରିବେ ଓ ଅଙ୍କ କଷି ପାରିବେ । ମାତ୍ର ଏସବୁ ଛଡ଼ା ଅନ୍ୟାନ୍ୟ

ବିଷୟ ଶିକ୍ଷା ଦେବାକୁ ଗଲେ ସେଥିସକାଶେ ସ୍ଥାନୀୟ ବ୍ୟକ୍ତିମାନଙ୍କ ଉପରେ ନିର୍ଭର କରିବାକୁ ହେବ ଏବଂ ତହିଁରେ ଉନ୍ନତି ଦେଖାଇବାକୁ ହେଲେ ସେମାନଙ୍କ ସାହାଯ୍ୟ ଓ ସହାନୁଭୂତି ଆବଶ୍ୟକ । ଏ ସ୍ଥଳରେ ଶିକ୍ଷାବିଭାଗ ପାଠ୍ୟ ନିର୍ବାଚନ କରି ତଦନୁସାରେ ଶିକ୍ଷା ଦେବାକୁ ବାଧ୍ୟ କରାଇବା ଆଦୌ ବାଞ୍ଛନୀୟ ନୁହେଁ । ଶିକ୍ଷାବିଭାଗ କେତେଗୁଡ଼ିଏ ପାଠ୍ୟବିଷୟ ସ୍ଥିର କରିଦେବେ ଏବଂ ସ୍ଥାନୀୟ ସମିତି ତହିଁ ମଧ୍ୟରୁ ନିଜ ନିଜ ମତ ଅନୁସାରେ ଶିକ୍ଷାବିଭାଗର ପରାମର୍ଶ ସହିତ ହେଉ ଅବା ବିନା ପରାମର୍ଶରେ ହେଉ ପ୍ରୟୋଜନାନୁରୂପ ପରିବର୍ତ୍ତନ କରି ପାଠ୍ୟ ନିର୍ବାଚନ କରିନେବେ । ସ୍ତ୍ରୀଶିକ୍ଷା ବିସ୍ତାର ଯେତେବେଳେ ଗଭର୍ଣ୍ଣମେଣ୍ଟଙ୍କ ଉଦ୍ଦେଶ୍ୟ, ସେତେବେଳେ ପ୍ରୟୋଜନ ଅନୁସାରେ ପାଠ୍ୟ ନିର୍ବାଚନ କରିବାରେ ବାଧାଦେବା ଆଦୌ ବାଞ୍ଛନୀୟ ନୁହେଁ ।''

ଉପରେ ଉଦ୍ଧୃତାଂଶରୁ ଜଣାଯାଉଅଛି ଯେ, ସ୍ତ୍ରୀଶିକ୍ଷା ବିସ୍ତାର ସମ୍ବନ୍ଧରେ କି କି ତ୍ରୁଟି ଅଛି, ତାହା ଭାରତ ଗଭର୍ଣ୍ଣମେଣ୍ଟ ଅବଶେଷରେ ବୁଝି ପାରିଅଛନ୍ତି । ତେଣୁ ସ୍ଥାନୀୟ ସମିତିଙ୍କ ହାତରେ ପାଠ୍ୟ ନିର୍ବାଚନ କାର୍ଯ୍ୟ ଛାଡ଼ିଦେବାକୁ ସେ ଚାହାନ୍ତି । ଆମ୍ଭମାନଙ୍କ କ୍ଷୁଦ୍ର ମତରେ ସମସ୍ତ ପ୍ରାଇମେରୀ ସ୍କୁଲସକାଶେ ଏକପ୍ରକାର ପାଠ୍ୟ ସ୍ଥିର ନକରି ନିର୍ବାଚନ ଭାର ଯେବେ ସ୍ଥାନୀୟ ସମିତିଙ୍କ ଉପରେ ଦିଆଯାଏ ଏବଂ ଭିନ୍ନ ଭିନ୍ନ ଶ୍ରେଣୀର ବାଳିକାମାନଙ୍କ ସକାଶେ ବିଦ୍ୟାଳୟ ସଂଖ୍ୟା ବଢ଼ାଇ ଦିଆଯାଏ, ତାହାହେଲେ ବାସ୍ତବରେ ସ୍ତ୍ରୀଶିକ୍ଷାର ବିସ୍ତାର ହେବ ଏବଂ ସାଧାରଣ ବ୍ୟକ୍ତିମାନଙ୍କର ସାହାଯ୍ୟ ଓ ସହାନୁଭୂତି ମିଳିବ । ଯେଉଁ ସ୍ଥାନରେ ପର୍ଦ୍ଦା ପ୍ରଥା ଆବଶ୍ୟକ ନୁହେଁ, ସେ ସ୍ଥାନରେ ପର୍ଦ୍ଦା ପ୍ରଥା ରକ୍ଷା କରିବାକୁ ଚେଷ୍ଟା କରିବା ଶିକ୍ଷାବିଭାଗର ଉଚିତ ନୁହେଁ । କର୍ତ୍ତୃପକ୍ଷୀୟ ବ୍ୟକ୍ତିମାନେ ଅବରୋଧ ପ୍ରଥା ସମ୍ବନ୍ଧରେ ଯାହା ବୁଝନ୍ତି, ସାଧାରଣ ବ୍ୟକ୍ତିମାନେ ତଦପେକ୍ଷା ଅଧିକ ବୁଝନ୍ତି । ଅନ୍ତତଃ ଓଡ଼ିଶାର ପ୍ରାଇମେରୀ ସ୍କୁଲମାନଙ୍କରେ ଅବରୋଧ ପ୍ରଥା ଆବଶ୍ୟକ ନାହିଁ । ଯେଉଁମାନେ ଅବରୋଧ ପ୍ରଥା ବୁଝନ୍ତି, ସେମାନେ ଜାଣନ୍ତି ଯେ, ୯/୧୦ ବର୍ଷଯାଏ ବାଳିକାମାନେ ଅବରୋଧରେ ରହନ୍ତି ନାହିଁ । ଏହା ମଧ୍ୟ କେବଳ ଉଚ୍ଚ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ପ୍ରଚଳିତ । ବାଳିକାମାନଙ୍କୁ ଲେଖିବା, ପଢ଼ିବା ଓ ଗଣିତ ଶିକ୍ଷା ଦେବା ସକାଶେ ମଫସଲରେ ବହୁତ ସଂଖ୍ୟାରେ ପ୍ରାଇମେରୀ ସ୍କୁଲମାନ ହେବା ଉଚିତ । ପ୍ରତି ଗ୍ରାମରେ ଯେବେ ବାଳିକା ବିଦ୍ୟାଳୟ ସ୍ଥାପନ କରିବା ସମ୍ଭବ ହୁଏ, ତାହାହେଲେ ଉତ୍ତମ । ଯେବେ ତାହା ନହୁଏ ତାହାହେଲେ ବାଳକମାନଙ୍କ ସହିତ ଏକ ସଙ୍ଗରେ ପଢ଼ିବା ପ୍ରତି ପିତାମାତାମାନଙ୍କର ଆପତ୍ତି ନଥିଲେ କୌଣସି ପ୍ରକାର ପ୍ରତିବନ୍ଧକ ଦେବା ଶିକ୍ଷାବିଭାଗଙ୍କ ପକ୍ଷରେ ଉଚିତ ନୁହେଁ । ଯେଉଁ ବ୍ୟକ୍ତିମାନଙ୍କର ସ୍ଥାନୀୟ ଅଭିଜ୍ଞତା ଅଛି ଓ ସ୍ଥାନୀୟ ଲୋକଙ୍କର ଅଭାବ ଯେଉଁମାନେ ବୁଝନ୍ତି, ସେହିପରି ବ୍ୟକ୍ତିମାନଙ୍କ ଉପରେ ପାଠ୍ୟପୁସ୍ତକ ନିର୍ବାଚନର ଭାର ଦେବା ଉଚିତ । ତାହା ନକରି ସ୍ଥାନୀୟ ଅଭିଜ୍ଞତାବିହୀନ କତିପୟ ବ୍ୟକ୍ତିଙ୍କ ଉପରେ ପାଠ୍ୟନିର୍ବାଚନର ଭାର ଦେଲେ ତଦ୍ଦ୍ୱାରା ପ୍ରୟୋଜନାନୁରୂପ ଶିକ୍ଷା ଦିଆଯିବା ଅସମ୍ଭବ ହେବ ।

ଗତ ଫେବ୍ରୁଆରୀ ମାସରେ କେତେକ ବ୍ୟକ୍ତିଙ୍କ ସହିତ ସ୍ତ୍ରୀଶିକ୍ଷା ସମ୍ବନ୍ଧରେ କଥାଭାଷା ହେଉଥିବା ସମୟରେ ଜଣେ ମେମ୍ବର କହିଲେ, ପ୍ରଚଳିତ ଶିକ୍ଷାରେ ଲୋକେ ଯେବେ ସନ୍ତୁଷ୍ଟ ନୁହନ୍ତି, ତାହା ହେଲେ ସେମାନଙ୍କର ପୃଥକ୍ ବନ୍ଦୋବସ୍ତ କରିବା ଉଚିତ । ସ୍କୁଲରୁ ସେମାନେ ତାହା ଆଶା କରିନପାରନ୍ତି । ଯେ ପ୍ରଣାଳୀରେ ସେମାନଙ୍କୁ ଶିକ୍ଷା ଦିଆଯାଉଅଛି, ତାହା ସେମାନଙ୍କର ଗ୍ରହଣ କରିବା ଉଚିତ । ଭଲ ମନ୍ଦ ବିଚାର କରିବା ସାଧାରଣ ଲୋକଙ୍କ ଉପରେ ଦିଆଯାଇନପାରେ । ମାତ୍ର ସୁଖର କଥା, ଭାରତ ଗଭର୍ଣ୍ଣମେଣ୍ଟ ଭିନ୍ନ ପ୍ରକାର ବିଚାର କରୁଅଛନ୍ତି ଏବଂ କି ପ୍ରକାର ଶିକ୍ଷା ଦିଆଯିବ, ତାହା ସ୍ଥିର କରିବା ସକାଶେ ଶିକ୍ଷା ବିଭାଗଙ୍କ ଅପେକ୍ଷା ସ୍ଥାନୀୟ ସମିତିମାନଙ୍କ ଉପରେ ଭାର ରହିବାର ପକ୍ଷପାତୀ ହୋଇଅଛନ୍ତି ।

ଦୁଃଖର କଥା, ଭିନ୍ନ ଭିନ୍ନ ଶ୍ରେଣୀର ପ୍ରାଇମେରୀ ସ୍କୁଲ ସକାଶେ ସମାଜ ଓ ସ୍ଥାନର ଉପଯୋଗୀ ପାଠ୍ୟ ବିଷୟମାନଙ୍କ ସମ୍ବନ୍ଧରେ ବିଶେଷଭାବରେ କହିବାକୁ ଆମ୍ଭମାନଙ୍କର ସମୟ ନାହିଁ, ଏପରି କରିବାକୁ ଗଲେ ବିଭିନ୍ନ ସମ୍ପ୍ରଦାୟଙ୍କ ମନୋଗତ ଭାବ ଜାଣିବା ଆବଶ୍ୟକ ଏବଂ ଯେଉଁମାନେ ସ୍ତ୍ରୀଶିକ୍ଷାର ପକ୍ଷପାତୀ, ସେମାନଙ୍କର ମତ ବୁଝିବା ମଧ୍ୟ ଆବଶ୍ୟକ । ପ୍ରାଇମେରୀ ଏବଂ ଅନ୍ୟାନ୍ୟ ସ୍କୁଲର ପାଠ୍ୟ ସମ୍ବନ୍ଧରେ କିଛି କହିବାକୁ ଗଲେ ସ୍ୱତନ୍ତ୍ର ଗୋଟିଏ ପ୍ରବନ୍ଧ ହେବ । ବର୍ତ୍ତମାନ କେବଳ ମଧ୍ୟ ଓ ଉଚ୍ଚ ଶିକ୍ଷା ସମ୍ବନ୍ଧରେ କେତେକ କଥା କହି ବକ୍ତବ୍ୟ ଶେଷ କରିବୁ ।

## ମଧ୍ୟ ଓ ଉଚ୍ଚଶିକ୍ଷା

ଓଡ଼ିଶାରେ ମଧ୍ୟଶ୍ରେଣୀ ବିଦ୍ୟାଳୟ ସଂଖ୍ୟା ଅତି ଅଳ୍ପ । ଉଚ୍ଚ ବିଦ୍ୟାଳୟ ସଂଖ୍ୟା ଆହୁରି କମ୍ । ଯେଉଁ ବାଳିକାମାନେ ଏସବୁ ବିଦ୍ୟାଳୟରେ ପଢ଼ନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଜାତିପ୍ରଥା ମାନନ୍ତି ନାହିଁ । ଅତି ଅଳ୍ପସଂଖ୍ୟକ ହିନ୍ଦୁବାଳିକା ମଧ୍ୟ ବିଦ୍ୟାଳୟମାନଙ୍କରେ ପଢ଼ନ୍ତି । ବାଲ୍ୟବିବାହ କେତେକ ପରିମାଣରେ ଏହାର କାରଣ ଅଟେ । ମାତ୍ର ଆମ୍ଭମାନଙ୍କ ବିବେଚନାରେ ମଧ୍ୟ ବିଦ୍ୟାଳୟମାନଙ୍କର ପାଠ୍ୟପୁସ୍ତକମାନ ଯେବେ ଲୋକ ସାଧାରଣଙ୍କ ମତାମତ ଦୃଷ୍ଟିରେ ନିର୍ବାଚିତ ହେଉଥାନ୍ତା । ତାହାହେଲେ ଅନେକ ହିନ୍ଦୁ ବାଳିକା ଏହି ସବୁ ସ୍କୁଲମାନଙ୍କରେ ପଢୁଥାନ୍ତେ । ଉଦାହରଣସ୍ୱରୂପ ମହାକାଳୀ ପାଠଶାଳା ଏବଂ ବନାରସରେ ଥିବା ସେଣ୍ଟ୍ରାଲ ହିନ୍ଦୁ ବାଳିକା ବିଦ୍ୟାଳୟ ନିଆଯାଉ । ଏହି ଦୁଇ ବିଦ୍ୟାଳୟରେ ସହସ୍ର ସହସ୍ର ବାଳିକା ପଢୁଅଛନ୍ତି । ଯେଉଁମାନେ ଜାତିଭେଦ ପ୍ରଥା ମାନନ୍ତି । ସେହି ବିଦ୍ୟାଳୟମାନଙ୍କର ଉଦ୍‌ଯୋଗୀମାନେ ହିନ୍ଦୁସାଧାରଣଙ୍କର ଉପଯୋଗୀ ପାଠ୍ୟ ନିର୍ବାଚନ କରିଅଛନ୍ତି ଏବଂ ସେମାନେ ମଧ୍ୟ ଅବରୋଧ ପ୍ରଥା ମାନି ଚଳନ୍ତି ନାହିଁ ।

ନିମ୍ନ ପ୍ରାଇମେରୀ ବିଦ୍ୟାଳୟମାନଙ୍କରେ ଯେପରି ଭିନ୍ନ ଭିନ୍ନ ଶ୍ରେଣୀର ବାଳିକାମାନଙ୍କ ସକାଶେ ଭିନ୍ନ ଭିନ୍ନ ପାଠ୍ୟ ନିର୍ବାଚନ କରିବା ଆବଶ୍ୟକ, ମଧ୍ୟଶ୍ରେଣୀ ବିଦ୍ୟାଳୟମାନଙ୍କ ସକାଶେ ସେହିପରି ପାଠ୍ୟ ନିର୍ବାଚନ କରିବା ଆବଶ୍ୟକ ଏବଂ ବିଦ୍ୟାଳୟମାନ ସ୍ଥାନୋପଯୋଗୀ ହେବା ମଧ୍ୟ ଆବଶ୍ୟକ ।

ଯେଉଁମାନେ ଜାତି ପ୍ରଥା ମାନନ୍ତି ଏବଂ ଯେଉଁମାନେ ଜାତିପ୍ରଥା ମାନନ୍ତି ନାହିଁ, ଏପରି ବାଳିକାମାନଙ୍କ ସକାଶେ ପୃଥକ୍ ପୃଥକ୍ ସ୍କୁଲହୋଇ ସେମାନଙ୍କର ସମାଜ ଉପଯୋଗୀ ପାଠ୍ୟ ବିଷୟ ନିର୍ବାଚିତ ହେବା ବାଞ୍ଛନୀୟ । ଯଥା : ହିନ୍ଦୁବାଳିକାମାନେ ପ୍ରାୟ ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେବାକୁ ଯାନ୍ତି ନାହିଁ । ହିନ୍ଦୁମାନେ ଚାହାନ୍ତି ଯେ ଭଲ ଘରକରଣା କରିବା ସକାଶେ ଯେତିକି ଶିକ୍ଷା ଆବଶ୍ୟକ, ସେମାନଙ୍କ ବାଳିକାମାନେ ତେତିକି ଶିକ୍ଷା ପାଇଲେ ଯଥେଷ୍ଟ । ପ୍ରାଦେଶିକ ଗଭର୍ଣ୍ଣମେଣ୍ଟଙ୍କ ନିକଟକୁ ଆସିଥିବା ପତ୍ରର ନିମ୍ନୋଦ୍ଧୃତ ଅଂଶରୁ ଜଣାଯାଏ ଭାରତ ଗଭର୍ଣ୍ଣମେଣ୍ଟ ଏ ବିଷୟ ଭଲ ରୂପେ ବୁଝି ପାରିଅଛନ୍ତି ।

‘‘ବାଳିକାମାନଙ୍କୁ ଏ ପ୍ରକାର ଶିକ୍ଷା ଦିଆଯିବା ଉଚିତ, ଯଦ୍ୱାରା ସେମାନେ ଶୁଶିକ୍ଷିତା ମାତା ହୋଇ ପାରିବେ, ସ୍ୱାସ୍ଥ୍ୟରକ୍ଷାର ନିୟମ ବୁଝି ଶିଶୁମାନଙ୍କର ଯତ୍ନ କରିପାରିବେ, ସନ୍ତାନମାନଙ୍କୁ କିପରି ଖାଦ୍ୟ ଦିଆଯିବ ଓ ସେମାନଙ୍କୁ କିପରି ସୁଶାସନରେ ରଖିବାକୁ ହେବ, ତାହା ବୁଝି ପାରିବେ ଓ ବାଳକ ବାଳିକା ମାନଙ୍କର ପୀଡ଼ା ସମୟରେ କିପରି ଶୁଶ୍ରୂଷା କରିବାକୁ ହେବ ଓ ଗାର୍ହସ୍ଥ୍ୟ ଜୀବନର ଅନ୍ୟାନ୍ୟ ବିଷୟମାନ କିପରି ଚଳାଇବାକୁ ହେବ, ତାହା ଜାଣିପାରିବେ ।’’

ଯେବେ ଅର୍ଥର ଅଭାବ ନହୁଏ ତାହାହେଲେ ପ୍ରତି ଜିଲ୍ଲାରେ ସ୍ଥାନୀୟ ଅବସ୍ଥା ଓ ଆବଶ୍ୟକତା ଦୃଷ୍ଟିରେ ମଧ୍ୟଶ୍ରେଣୀ ବିଦ୍ୟାଳୟମାନ ବହୁସଂଖ୍ୟାରେ ଖୋଲିବା ଆବଶ୍ୟକ । ଏହି ସବୁ ବିଦ୍ୟାଳୟରେ ଇଂରେଜୀକୁ Second languag ଅର୍ଥାତ୍ ଗୌଣଭାଷାସ୍ୱରୂପ ଶିକ୍ଷା ଦିଆଯିବା ଉଚିତ । ଯେଉଁସ୍ଥାନରେ ସଙ୍ଗୀତ ଓ ଧର୍ମଶିକ୍ଷା ଆବଶ୍ୟକ, ସେ ସ୍ଥାନରେ ଏ ସବୁ ବିଷୟ ଶିକ୍ଷାଦେବା ସକାଶେ ବିହିତ ବନ୍ଦୋବସ୍ତ ହେବା ଉଚିତ ବର୍ତ୍ତମାନ ପ୍ରାୟ କୌଣସି ହିନ୍ଦୁବାଳିକା ଉଚ୍ଚ ବିଦ୍ୟାଳୟ ମାନଙ୍କରେ ପଢ଼ନ୍ତି ନାହିଁ । ଆମ୍ଭମାନଙ୍କ ପ୍ରଦେଶରେ ତିନିଗୋଟି ଉଚ୍ଚବିଦ୍ୟାଳୟ ଅଛି । ବିହାରରେ ଦୁଇଗୋଟି, ଓଡ଼ିଶାରେ ଗୋଟିଏ । ଶିକ୍ଷିତ ହିନ୍ଦୁସମାଜ ଗୋଟିଏ ପରିବର୍ତ୍ତନମୟ ଯୁଗ ମଧ୍ୟଦେଇ ଗତି କରୁଅଛି । ବାଲ୍ୟବିବାହ ପ୍ରତି ସେମାନଙ୍କର ଆଉ ଆସ୍ଥାନାହିଁ । ଏହି ସମୟରେ ଯେବେ ମଧ୍ୟ ଓ ଉଚ୍ଚ ବିଦ୍ୟାଳୟମାନଙ୍କ ପ୍ରତି ସେମାନଙ୍କର ଶ୍ରଦ୍ଧାଜନ୍ମେ ତାହାହେଲେ ସେମାନେ ନିଶ୍ଚୟ ଗଭର୍ଣ୍ଣମେଣ୍ଟଙ୍କ ଚେଷ୍ଟାରେ ସହାୟତା କରିବେ ଏବଂ ବାଳିକାମାନଙ୍କୁ ସେହିସବୁ ବିଦ୍ୟାଳୟକୁ ପଠାଇବେ । ଯେବେ ଆବଶ୍ୟକ ହୁଏ, ଯେଉଁ ବାଳିକାମାନେ ଜାତିପ୍ରଥା ମାନନ୍ତି, ସେମାନଙ୍କ ସକାଶେ ପର୍ଦ୍ଦା ସ୍କୁଲ ସ୍ଥାନେ ସ୍ଥାନେ ସ୍ଥାପିତ କରାଯାଉ ଏବଂ ସେମାନଙ୍କର ସାମାଜିକ ଅବସ୍ଥାନୁରୂପ ବିଷୟମାନ ସେଠାରେ ଶିକ୍ଷା ଦିଆଯାଉ । ଯେଉଁମାନେ ଜାତିପ୍ରଥା ମାନନ୍ତି ନାହିଁ, ସେମାନଙ୍କ ସକାଶେ ପର୍ଦ୍ଦାସ୍କୁଲ ଆବଶ୍ୟକ ନାହିଁ । ଖ୍ରୀଷ୍ଟିୟାନ ଓ ବ୍ରାହ୍ମପିତା ମାତାମାନେ ସେମାନଙ୍କ କନ୍ୟାମାନଙ୍କୁ ଶିକ୍ଷିତ କରାଇବାର ସୁବିଧା ବୁଝିପାରିଅଛନ୍ତି । ଏସବୁ ସ୍ଥଳରେ ମଧ୍ୟ ସବୁ ବାଳିକାମାନେ ବିଶ୍ୱବିଦ୍ୟାଳୟ ଶିକ୍ଷା ପାଇବାକୁ ଇଚ୍ଛୁକ ନୁହନ୍ତି । କେତେକ ବାଳିକା ବିଶ୍ୱବିଦ୍ୟାଳୟ ଶିକ୍ଷା ଉଦ୍ଦେଶ୍ୟରେ ଶିକ୍ଷିତ

ହେବାକୁ ଇଚ୍ଛା କରନ୍ତି, ଆଉ କେତେକ ନିଜ ନିଜ ଗୃହକର୍ମରେ ପାରଗ ହେବାକୁ ଇଚ୍ଛା କରନ୍ତି, କେହି କେହି ମଧ୍ୟ ନିଜ ନିଜ ସମାଜର ଉପକାର କରିବାକୁ ଇଚ୍ଛା କରନ୍ତି । ଏଣୁ କେତେକ ଶ୍ରେଣୀର ଓ କେତେକ ସ୍ଥାନର ବାଳିକାମାନଙ୍କୁ ଶିକ୍ଷାଦେବାକୁ ଗଲେ ବିଶେଷ ସାବଧାନତା ସହିତ ଅଗ୍ରସର ହେବା ବାଞ୍ଛନୀୟ । ଓଡ଼ିଶାରେ ଗୋଟିଏ ଉଚ୍ଚ ବିଦ୍ୟାଳୟ ଅଛି । ତାହାର ଉପର ଛ ଶ୍ରେଣୀରେ ଯେଉଁ ବାଳିକାମାନେ ପଢ଼ନ୍ତି ସେମାନେ ପ୍ରାୟ ଜାତିଭେଦ ପ୍ରଥା ମାନନ୍ତି ନାହିଁ । ଯେବେ ଅବରୋଧ ପ୍ରଥା ରକ୍ଷା କରିବା ଶିକ୍ଷା ବିଭାଗର ଇଚ୍ଛା ହୁଏ, ତାହାହେଲେ ଯେଉଁମାନେ ଜାତିଭେଦ ମାନନ୍ତି ନାହିଁ, ସେମାନଙ୍କ ସକାଶେ ପୃଥକ ହାଇସ୍କୁଲ କରନ୍ତୁ ଏବଂ ପର୍ଦ୍ଦାସ୍କୁଲ ପ୍ରତି ଜନସାଧାରଣଙ୍କର ଅନୁରାଗ ଜନ୍ମାଇବାକୁ ହେଲେ ସେମାନଙ୍କର ପ୍ରୟୋଜନ ଅନୁସାରେ ପାଠ୍ୟବିଷୟ ନିର୍ବାଚନ କରନ୍ତୁ ।

କଲେଜ ଶିକ୍ଷା-ଆମ୍ଭ ଏ ପ୍ରଦେଶରେ ବାଳିକାମାନଙ୍କ ସକାଶେ କୌଣସି କଲେଜ ନାହିଁ । କିମ୍ବା ସେପରି କଲେଜ ସକାଶେ ଗଭର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା କରିବାର ସମୟ ମଧ୍ୟ ଆସିନାହିଁ । ମାତ୍ର ଆମ୍ଭେ ବିଶ୍ୱାସ କରୁଁ ଯେ ୩/୪ ବର୍ଷ ମଧ୍ୟରେ କଟକଠାରେ ଗୋଟିଏ ମହିଳା କଲେଜ ସ୍ଥାପିତ ହେବ । ଯେବେ ବାଳିକାମାନଙ୍କ ସଂଖ୍ୟା ଅତି ଅଳ୍ପ ହୁଏ ଏବଂ ସେମାନେ ସ୍ଥାନୀୟ ବାଳକ କଲେଜରେ ପଢ଼ିବାକୁ ଆପତ୍ତି ନକରନ୍ତି, ତାହେଲେ ସେମାନଙ୍କର ସ୍ଥାନୀୟ କଲେଜରେ ପଢ଼ିବା ଉଚିତ । ଯେବେ ହାଇସ୍କୁଲ ସଙ୍ଗରେ କଲେଜ ଶ୍ରେଣୀ ଖୋଲାଯାଏ, ତାହାହେଲେ ସେଥି ସକାଶେ ଉପଯୁକ୍ତ ଶିକ୍ଷକ ନରଖି ଯେଉଁ ସବୁ ବିଷୟ ଶିକ୍ଷା ଦିଆଯିବ, କେବଳ ତହିଁ ଲାଗି ଗୋଟିଏ ବା ଦିଓଟି 'ଲେକ୍‌ଚରର' ବନ୍ଦୋବସ୍ତ କରି ଦେଲେ ଯଥେଷ୍ଟ ହେବ ନାହିଁ । ଏପରି ଲେକ୍‌ଚରର ଦ୍ୱାରା ବିଶେଷ କିଛି ଉପକାର ହେବାର ସମ୍ଭବ ନୁହେଁ । ଯେବେ ସମୟରେ ଭାରତରେ ମହିଳା ବିଶ୍ୱବିଦ୍ୟାଳୟ ସ୍ଥାପିତ ହୁଏ, ତାହାହେଲେ ତଦ୍ଦୃଷ୍ଟିରେ ବାଳିକାମାନଙ୍କର ପାଠ୍ୟ ନିର୍ବାଚିତ ହେବ । ଶିକ୍ଷାବିଭାଗଙ୍କର ଏହା ମନେରଖିବା ଉଚିତ ଯେ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ନାରୀ ଜୀବନ ଏକ ନୁହେଁ । ପାଶ୍ଚାତ୍ୟ ଦେଶରେ ଯାହା ପ୍ରକୃତ ଶିକ୍ଷାବୋଲି ଗୃହୀତ ହେବ, ପ୍ରାଚ୍ୟ ଖଣ୍ଡରେ ସେପରି ଶିକ୍ଷାକୁ ଲୋକେ ଆଦର କରିବେ ନାହିଁ । ବୋମ୍ବାଇଠାରେ କେତେକ ସମୟ ରହି ଆମ୍ଭେମାନେ ବୁଝି ପାରିଅଛୁଁ ଯେ, ସେ ପ୍ରଦେଶର ସ୍ତ୍ରୀମାନେ ଭାରତର ଅନ୍ୟାନ୍ୟ ପ୍ରଦେଶର ସ୍ତ୍ରୀମାନଙ୍କ ଅପେକ୍ଷା ସୁଶିକ୍ଷିତା । ତଥାପି ସେମାନଙ୍କର ପିତାମାତା ସେପରି ଶିକ୍ଷାରେ ସନ୍ତୁଷ୍ଟ ନୁହନ୍ତି । ଶିକ୍ଷିତା ମହିଳାମାନେ ଉଚ୍ଚ ସମାଜରେ ବିଚରଣ କରନ୍ତି, ସେମାନଙ୍କର ଗୋଟିଏ ପର୍ଦ୍ଦା କ୍ଲବ ଅଛି, ତହିଁର ସଭ୍ୟ ସଂଖ୍ୟା ୭୦୦ । ସପ୍ତାହ ମଧ୍ୟରେ ଦିନେ ପୁରୁଷମାନେ ଦର୍ଶକସ୍ୱରୂପ କ୍ଲବ ମଧ୍ୟକୁ ଯାଇ ପାରନ୍ତି ଏବଂ ମହିଳାମାନଙ୍କ ସହିତ ମିଶି ପାରନ୍ତି । ପାଶ୍ଚାତ୍ୟ ଭୂଖଣ୍ଡରେ ଯେପରି ସ୍ତ୍ରୀଶିକ୍ଷା ଦେଖାଯାଏ, ଏଠାରେ ସେହିପରି ଶିକ୍ଷା ଦେଖିବାକୁ ମିଳେ । ପିତାମାତାମାନେ ଏପରି ଶିକ୍ଷାର ପକ୍ଷପାତୀ ନୁହନ୍ତି ।

ଦିଓଟି ବିଷୟ ପ୍ରତି ଦୃଷ୍ଟି ଦେଇ ମଧ୍ୟ ଓ ଉଚ୍ଚ ସ୍ତ୍ରୀ ଶିକ୍ଷା ପରିଚାଳିତ ହେବା ଉଚିତ । (୧) ନିଜ ନିଜ ମାତୃଭାଷାରେ ଶିକ୍ଷା ପ୍ରଦତ୍ତ ହେବା; (୨) ସମାଜ ମଧ୍ୟରେ ସ୍ତ୍ରୀମାନଙ୍କର କାର୍ଯ୍ୟ ଓ କର୍ତ୍ତବ୍ୟ ପୁରୁଷମାନଙ୍କ କାର୍ଯ୍ୟ ଓ କର୍ତ୍ତବ୍ୟଠାରୁ ପୃଥକ୍, ଏହା ଅବଧାରଣ କରି ଶିକ୍ଷାର ଗତି ସ୍ଥିର କରିବା । ନିରପେକ୍ଷ ଭାବରେ ଯେ ଏ ବିଷୟ ବିବେଚନା କରିବେ, ସେ ନିଶ୍ଚୟ ଉପରୋକ୍ତ ଦୁଇ ବିଷୟର ଆବଶ୍ୟକତା ଅନୁଭବ କରିପାରିବେ । ଯେତେ ଶୀଘ୍ର ମାତୃଭାଷା ସାହାଯ୍ୟରେ ନିମ୍ନ, ମଧ୍ୟ ଓ ଉଚ୍ଚ ଶିକ୍ଷା ଦିଆଯାଏ, ତେତେ ଜାତି ପକ୍ଷରେ ମଙ୍ଗଳ ।

ଦ୍ୱିତୀୟ ବିଷୟଟି ଅଧିକ ଗୁରୁତର । ଆମ୍ଭେମାନେ ଏହା କହୁନାହୁଁ ଯେ, ଯେଉଁମାନେ ପୁରୁଷମାନଙ୍କ ସହିତ ପ୍ରତିଯୋଗିତା କରି ସମ୍ମାନ ଓ ଉଚ୍ଚ ଗଭର୍ଣ୍ଣମେଣ୍ଟ ଚାକିରି ପାଇବାକୁ ଆଶା କରନ୍ତି, ସେମାନଙ୍କ ପଥ ଏକାବେଳକେ ଅବରୋଧ କରି ଦେବାକୁ ହେବ । ଯେଉଁମାନେ ମାନସିକ ଓ ଶାରୀରିକ ଶକ୍ତି ବଳରେ ସେପରି କରିବାକୁ ସମର୍ଥ ହେବେ, ସେମାନେ ନିଜ ନିଜ ସମାଜର ଗୌରବସ୍ଥଳ ହେବେ । ମାତ୍ର ଆମ୍ଭମାନଙ୍କର ଏହା ମନେ ରଖିବା ଉଚିତ ଯେ, ସାମାଜିକ ଓ ଜାତୀୟ ମଙ୍ଗଳ ବିବେଚନାରେ ସ୍ତ୍ରୀମାନଙ୍କ ସ୍ଥାନ ପୁରୁଷମାନଙ୍କ ସ୍ଥାନଠାରୁ ପୃଥକ୍ ରହିବ । ଯେବେ ମାତୃଭାଷା ସାହାଯ୍ୟରେ ଶିକ୍ଷାଦିଆଯାଇ ବିଦ୍ୟାଳୟମାନ ସ୍ଥାପିତ ହୁଏ ଏବଂ ନାରୀଜାତିର ଆବଶ୍ୟକତାନୁରୂପ ପାଠ୍ୟସ୍ଥିର କରି ଦିଆଯାଏ, ତାହାହେଲେ ଶିକ୍ଷାର୍ଥୀର ଅଭାବ ହେବ, ଏହା ଆମ୍ଭେମାନେ ମନେ କରୁନାହୁଁ । ପୁରୁଷମାନଙ୍କ ସକାଶେ ଯେପରି ସମ୍ମାନ ଓ ଉପାଧିମାନ ଅଛି, ସ୍ତ୍ରୀମାନଙ୍କ ସକାଶେ ଯେବେ ସେହିପରି କିଛି ରହେ, ତାହାହେଲେ ବାଳିକାମାନେ ଆଗ୍ରହ ସହିତ ପଢ଼ିବାକୁ ଆସିବେ । ଅନେକ ବାଳିକା ଉପାଧି ଲାଳସାରେ ବିଶ୍ୱ ବିଦ୍ୟାଳୟ ପରୀକ୍ଷା ଦେବାକୁ ଆସୁଅଛନ୍ତି, କେବଳ ଶିକ୍ଷାର ଲୋଭରେ ନୁହେଁ । ମଧ୍ୟ ଓ ଉଚ୍ଚ ବିଦ୍ୟାଳୟର ପାଠ୍ୟସ୍ଥିର କରିବାରେ ଆମ୍ଭେମାନେ ଜାପାନ ମହିଳା ବିଶ୍ୱବିଦ୍ୟାଳୟ ଆଦର୍ଶରେ ଚଳିବା ଉଚିତ । ଜାପାନ ସହିତ ଆମ୍ଭମାନଙ୍କର ଅବସ୍ଥାଗତ ଯେପରି ସାଦୃଶ୍ୟ ଅଛି, ପାଶ୍ଚାତ୍ୟ ଭୂଖଣ୍ଡ ସହିତ ସେଠାରେ ସାଦୃଶ୍ୟ ନାହିଁ । ଜାପାନର ମହିଳା ବିଶ୍ୱବିଦ୍ୟାଳୟ ଏପରି ସର୍ବଜନପ୍ରିୟ ହୋଇ ଉଠିଲା ଯେ ୩୦/୩୫ ବର୍ଷ ବୟସ୍କା ସ୍ତ୍ରୀମାନେ ମଧ୍ୟ ସ୍କୁଲ କଲେଜରେ ପ୍ରବେଶ କରି ଉପାଧି ନେବାକୁ ଆକାଂକ୍ଷିତ ହେଲେ । ଆମ୍ଭେମାନେ ଯେବେ ଏ ବିଷୟରେ ଜାପାନର ପଦାଙ୍କ ଅନୁସରଣ କରୁଁ, ତାହାହେଲେ ଦେଶର ବିଶେଷ ମଙ୍ଗଳ ସାଧନ କରିବ । ଜାପାନ ଆଦର୍ଶରେ ନିମ୍ନ ଓ ମଧ୍ୟସ୍କୁଲ ମାନଙ୍କର ପାଠ୍ୟପୁସ୍ତକ ସ୍ଥିର କରିବା କଷ୍ଟକର ହେବ ନାହିଁ । ଉପଯୁକ୍ତ ପାଠ୍ୟପୁସ୍ତକ ହେବାଯାଏ ପ୍ରଚଳିତ ପୁସ୍ତକ ମାନଙ୍କରୁ ବାଛି ପାଠ୍ୟ ସ୍ଥିର କରାଯାଇପାରିବ । ସଂକ୍ଷେପରେ କହିବାକୁ ଗଲେ ଯେବେ ଇଚ୍ଛା ଜାଗ୍ରତ ହୁଏ, ତାହାହେଲେ ଉପାୟର ଅଭାବ ହେବ ନାହିଁ ।

ଉପରଲିଖିତମତେ ପାଠ୍ୟସ୍ଥିର କରିବାକୁ ଯାଇଁ ପ୍ରଚଳିତ ପଦ୍ଧତିକୁ ହଠାତ୍ ପରିତ୍ୟାଗ କରିବା ଆମ୍ଭମାନଙ୍କର ଉଚିତ ନୁହେଁ । ନୂତନ ହାଇସ୍କୁଲମାନଙ୍କରେ ବାଳିକାମାନଙ୍କ ସକାଶେ

ଯେଉଁ ପାଠ୍ୟ ନିର୍ବାଚିତ ହେବ, ତାହା ପ୍ରଚଳିତ ପାଠ୍ୟବିଷୟ ସହିତ ସାମଞ୍ଜସ୍ୟ ରଖି ସ୍ଥିର କରାଯିବ । ଯେଉଁମାନେ ହାଇସ୍କୁଲର ଶିକ୍ଷା ଶେଷ କରି ସଂସାର କାର୍ଯ୍ୟରେ ପ୍ରବେଶ କରିବାକୁ ଇଚ୍ଛୁକ, ସେମାନଙ୍କ ପକ୍ଷରେ ପାଠ୍ୟ ବିଷୟମାନ ଅସମ୍ପର୍କ କିମ୍ବା ଅଙ୍ଗହୀନ ହୋଇ ରହିବା ଉଚିତ ନୁହେଁ । ପାଠ୍ୟ ବିଷୟମାନ ସେମାନଙ୍କ ସକାଶେ ଯଥାସମ୍ଭବ ସମ୍ପୂର୍ଣ୍ଣ ରହିବା ବାଞ୍ଛନୀୟ । ଆଉ ଯେଉଁମାନେ ଉଚ୍ଚ ଶିକ୍ଷା ଆଡ଼କୁ ଅଗ୍ରସର ହେବାକୁ ଇଚ୍ଛା କରନ୍ତି, ସେମାନଙ୍କ ପକ୍ଷେ ଉକ୍ତ ଶିକ୍ଷା ସୋପାନ ସ୍ୱରୂପ ହେବା ଉଚିତ । ଆହୁରି ମଧ୍ୟ ପାଠ୍ୟ ବିଷୟମାନ ଏପରି ଭାବରେ ନିର୍ବାଚିତ ହୋଇପାରେ ଯେ, ଯେଉଁମାନେ ମାଟ୍ରିକ୍ୟୁଲେଶନ ପରୀକ୍ଷାଦେବା ସକାଶେ ଇଚ୍ଛା କରିବେ, ସେମାନେ ଦୁଇବର୍ଷ ପରିଶ୍ରମ କଲେ ସହଜରେ ବିଶ୍ୱବିଦ୍ୟାଳୟର ମାଟ୍ରିକ୍ୟୁଲେଶନ ପରୀକ୍ଷା ଦେଇପାରିବେ ।

## ଟ୍ରେନିଂ ଓ ଶିଳ୍ପ ବିଦ୍ୟାଳୟ

"ଏକାନ୍ନବର୍ତ୍ତୀ ପରିବାରମାନଙ୍କରେ ବିଧବା ସ୍ତ୍ରୀମାନେ ଯେପରି ଯତ୍ନରେ ପ୍ରତିପାଳିତ ହେଉଥିଲେ ଏବଂ ସଂକୀର୍ଣ୍ଣ ସୀମା ମଧ୍ୟରେ ହେଲେ ହେଁ ସେମାନେ ପରିବାରସ୍ଥ ଅନ୍ୟ ପାଞ୍ଚଜଣଙ୍କର ଯେପରି ଉପକାର କରିବାର ସୁବିଧା ପାଉଥିଲେ, ଆଜିକାଲି ପୂର୍ବପ୍ରଚଳିତ ଏକାନ୍ନବର୍ତ୍ତୀ ପରିବାର ପ୍ରଥା ଖଣ୍ଡବିଖଣ୍ଡ ହେଉଥିବା ଯୋଗୁଁ ସେମାନଙ୍କର ସେ ସୁବିଧା ଚାଲି ଯାଉଅଛି । ପୂର୍ବତନ ପ୍ରଥାନୁସାରେ ସେମାନେ ବାଧ୍ୟ ହୋଇ ଅନ୍ୟର ଅଧୀନରେ ରହୁଥିଲେ ସୁଦ୍ଧା ସେମାନଙ୍କର କେତେକ ସୁବିଧା ଥିଲା । ଆଜିକାଲି ତାହା ସବୁ ଚାଲି ଯାଉଅଛି; ତହିଁ ସଙ୍ଗେ ସଙ୍ଗେ ସେମାନଙ୍କର ଯେଉଁ ସୁବିଧା ସବୁଥିଲା, ତାହା ମଧ୍ୟ ଚାଲିଯାଉଅଛି ।" ସାର ଏଡ଼ୱାର୍ଡ଼ ମାକ୍‌ଲାଗନ ପ୍ରାଦେଶିକ ଗଭର୍ଣ୍ଣମେଣ୍ଟମାନଙ୍କ ନିକଟକୁ ଯେଉଁ ପତ୍ର ଦେଇଥିଲେ ତହିଁରୁ ଉପରୋକ୍ତ ଅଂଶଟି ଉଦ୍ଧୃତ ହେଲା । ବାଳ ବିଧବାମାନେ ସ୍କୁଲରେ ପଢ଼ି ଏବଂ ଉଚ୍ଚଶିକ୍ଷା ପାଇ ମଧ୍ୟ ଓ ଉଚ୍ଚ ବିଦ୍ୟାଳୟମାନଙ୍କରେ ଶିକ୍ଷୟତ୍ରୀ କାର୍ଯ୍ୟ କରିପାରନ୍ତି । ମାତ୍ର ବିଧବାମାନଙ୍କ ସକାଶେ ଟ୍ରେନିଂ ସ୍କୁଲମାନ ହେବା ଆବଶ୍ୟକ । ୧୯୦୯ ସାଲରେ ବେଙ୍ଗଲ ଗଭର୍ଣ୍ଣମେଣ୍ଟ ପରୀକ୍ଷାସ୍ୱରୂପ କଲିକତାଠାରେ ହନ୍ଦୁବିଧବାମାନଙ୍କ ସକାଶେ ଗୋଟିଏ ଟ୍ରେନିଂ ସ୍କୁଲ ବସାଇବାକୁ ଯାଇଁ ହିନ୍ଦୁସମାଜରୁ ବିଶେଷ ପ୍ରତିବନ୍ଧକ ପାଇଥିେ ଏବଂ ଅତି କଷ୍ଟରେ ତିନିଗୋଟି ହିନ୍ଦୁ ବିଧବା ମିଳିଲେ; ସେମାନଙ୍କ ସକାଶେ ମାସିକ ୬୦୦ ଠାରୁ ୭୦୦ଟଙ୍କା ପର୍ଯ୍ୟନ୍ତ ଖରଚ ହେଉଥିଲା । ବର୍ତ୍ତମାନ ସେ ଚେଷ୍ଟା ସଫଳ ହୋଇଅଛି । ବଡ଼ ଦୁଃଖର ବିଷୟ ଯେ, ଓଡ଼ିଶାରେ ହିନ୍ଦୁ ବିଧବାମାନଙ୍କ ସକାଶେ ଟ୍ରେନିଂ ସ୍କୁଲ ନାହିଁ । ୧୯୧୦ ସାଲରେ ଶିକ୍ଷାବିଭାଗ ଆମ୍ଭମାନଙ୍କୁ ଗୋଟିଏ ଟ୍ରେନିଂ ସ୍କୁଲ ଦେବେ ବୋଲି ଆମ୍ଭେମାନେ ବଡ଼ ଆଶା କରିଥିଲୁ । କିନ୍ତୁ ନୂତନ ପ୍ରଦେଶ ହେବାଦିନଠାରୁ ଆମ୍ଭମାନଙ୍କର ଆଶା ଅପୂର୍ଣ୍ଣ ଅବସ୍ଥାରେ ରହିଅଛି । ୧୯୧୪ ମସିହାରେ ଟ୍ରେନିଂ ସ୍କୁଲ ସମ୍ବନ୍ଧରେ କେତେକ ପ୍ରସ୍ତାବ ଶିକ୍ଷାବିଭାଗଙ୍କ ନିକଟରେ ଆଗତ କରାଯାଇଥିଲା । ମାତ୍ର ଦୁଃଖର ବିଷୟ, ଆମ୍ଭମାନଙ୍କ ପ୍ରସ୍ତାବ ସ୍ଥାନୀୟ କର୍ତ୍ତୃପକ୍ଷଙ୍କ ମନକୁ ଆସିଲା ନାହିଁ ।

ଯେଉଁମାନେ ରେଭେନ୍‌ସା ବାଳିକା ବିଦ୍ୟାଳୟର ଇତିହାସ ଜାଣନ୍ତି, ସେମାନେ ଏହା ଅବଗତ ଅଛନ୍ତି ଯେ, ସ୍ଥାନୀୟ ହାକିମମାନେ ଯେବେ ତାହାର ପ୍ରତିକୂଳରେ ଚାଲି କୃତକାର୍ଯ୍ୟ ହୋଇଥାନ୍ତେ, ତାହାହେଲେ କଟକ ଉପସ୍ଥିତ ଉଚ୍ଚବାଳିକା ବିଦ୍ୟାଳୟ ପାଇ ପାରିନଥାନ୍ତା । ଯେବେ ସ୍ଥାନୀୟ କର୍ତ୍ତୃପକ୍ଷଙ୍କ ମତକୁ ଗ୍ରହଣ ନକରି ଶିକ୍ଷାବିଭାଗ ଟ୍ରେନିଂ ସ୍କୁଲର ପ୍ରସ୍ତାବ ଗ୍ରହଣ କରିଥାନ୍ତେ ତାହାହେଲେ ଏତେବେଳକୁ ବିଧବାମାନଙ୍କ ଶିକ୍ଷା ସକାଶେ କଟକରେ ଗୋଟିଏ ଟ୍ରେନିଂସ୍କୁଲ ହୋଇପାରିଥାନ୍ତା । ମାତ୍ର ସୁଖର ବିଷୟ ଭାରତ ଗଭର୍ଣ୍ଣମେଣ୍ଟଙ୍କ ଦୃଷ୍ଟି ଏ ବିଷୟ ପ୍ରତି ପଡ଼ିଅଛି ଏବଂ ଆମ୍ଭେମାନେ ଆଶା କରୁ, ଏଠାରେ ଆମ୍ଭେମାନେ ଶୀଘ୍ର ଗୋଟିଏ ଟ୍ରେନିଂସ୍କୁଲ ପାଇବୁ ।

ଆମ୍ଭମାନଙ୍କର ଏଠାରେ ଗୋଟିଏ ଶିଳ୍ପ ବିଦ୍ୟାଳୟ ମଧ୍ୟ ଆବଶ୍ୟକ । ନାନା ଜାତିର ଅନେକ ଗୁଡ଼ିଏ ସ୍ତ୍ରୀ ଅଛନ୍ତି, ଯେଉଁମାନେ ଟ୍ରେନିଂ ପାଇବାର ଉପଯୁକ୍ତ ନୁହନ୍ତି, ଅଥଚ ସେମାନଙ୍କର ଜୀବିକାନିର୍ବାହ ସକାଶେ କୌଣସି ପ୍ରକାର ଉପାୟ ହେବା ଉଚିତ । ସେମାନଙ୍କ ପକ୍ଷରେ ଗୋଟିଏ ଶିଳ୍ପବିଦ୍ୟାଳୟ ବିଶେଷ ଆଦରର ପଦାର୍ଥ ହେବ ।

ଶିକ୍ଷକମାନଙ୍କ ସମ୍ବନ୍ଧରେ କିଛି କହିବା ଆମ୍ଭେମାନେ ଆବଶ୍ୟକ ବୋଧକରୁଁ । କାରଣ ସ୍କୁଲପରିଚାଳନାର ଯେତେ ସୁବ୍ୟବସ୍ଥା କରାଯାଉ ପଛକେ, ଶିକ୍ଷକ, ପାଠ୍ୟପୁସ୍ତକ ଏବଂ ସ୍କୁଲର କାର୍ଯ୍ୟ ଉପରେ ଜାତିପ୍ରଥା ମାନୁଥିବା ବାଳିକାମାନେ ପଢ଼ିବାକୁ ଆସିବା ନ ଆସିବା ଅନେକ ପରିମାଣରେ ନିର୍ଭର କରେ ।

ଶିକ୍ଷକମାନେ ବାଳିକାମାନଙ୍କୁ ଶିକ୍ଷାଦେବା କାର୍ଯ୍ୟରେ ସେମାନଙ୍କର ପବିତ୍ର ଦାୟିତ୍ୱକୁ ଅନୁଭବ କରିବା ଉଚିତ । ଯେଉଁମାନଙ୍କର ସନ୍ତାନମାନଙ୍କୁ ସେମାନେ ଶିକ୍ଷାଦେଉଅଛନ୍ତି, ସେମାନଙ୍କ ହୃଦୟ ଓ ମନର ଭାବ ଜାଣିବା ଶିକ୍ଷକମାନଙ୍କର ଉଚିତ । ପିତାମାତାମାନଙ୍କ ସାହାଯ୍ୟ ଓ ସହାନୁଭୂତି ଲାଭ କରିବା ସେମାନଙ୍କ ପକ୍ଷରେ ଅତ୍ୟନ୍ତ ଆବଶ୍ୟକ । ବାସ୍ତବରେ ପିତାମାତାମାନଙ୍କୁ ଭଲରୂପେ ଜାଣିବା ଶିକ୍ଷକମାନଙ୍କର ଉଚିତ । ତାହାହେଲେ ହିନ୍ଦୁମାନେ କୌଣସି ଦ୍ୱିଧା ନ କରି ସେମାନଙ୍କର ବାଳିକାମାନଙ୍କୁ ଶିକ୍ଷା ପାଇବାକୁ ପଠାଇବେ । ଦୁଃଖର କଥା, କେତେକ ଶିକ୍ଷୟତ୍ରୀଙ୍କ ମତରେ ଅଭିଭାବକମାନଙ୍କ ମତ ଜାଣିବା ସେମାନଙ୍କର ଉଚିତ ନୁହେଁ କିମ୍ବା ସେମାନଙ୍କ ସହିତ ମିଶିବା ଆବଶ୍ୟକ ନୁହେଁ । ଶିକ୍ଷୟିତ୍ରୀମାନେ ଯେବେ ସାଧାରଣଙ୍କ ପ୍ରତି ଏପରି ଭାବ ପୋଷଣ କରନ୍ତି ତାହା ହେଲେ ଶିକ୍ଷାବିସ୍ତାର ବଡ଼ ଆଶାଜନକ ନୁହେଁ । ଶିକ୍ଷୟିତ୍ରୀମାନେ ମାତାଙ୍କର ପବିତ୍ରସ୍ଥାନ ଗ୍ରହଣ କରିବା ଉଚିତ । ଶିକ୍ଷୟିତ୍ରୀମାନଙ୍କ ସହିତ ଜନସାଧାରଣଙ୍କ ସଦ୍ଭାବ ରହିଲେ ସ୍ତ୍ରୀ ଶିକ୍ଷା ସମ୍ବନ୍ଧରେ ସେମାନେ ସାଧାରଣ ଲୋକଙ୍କର ସାହାଯ୍ୟ ଓ ସହାନୁଭୂତି ଲାଭ କରି ପାରିବେ ।

ଆମ୍ଭେ କହିଅଛୁଁ ଯେ, ପାଠ୍ୟପୁସ୍ତକ ଉପରେ ବାଳିକାମାନଙ୍କ ଶିକ୍ଷା ବିଶେଷରୂପେ ନିର୍ଭର କରେ । ପୁସ୍ତକ ନିର୍ବାଚନରେ ଶିକ୍ଷାବିଭାଗ ବିଶେଷ ସତର୍କ ହେବା ଉଚିତ ଏବଂ ସ୍ଥାନୀୟ

ଲୋକଙ୍କ ମତାମତ ଓ ମନୋଗତ ଭାବ ଜାଣିପାରିବା ଶିକ୍ଷାବିଭାଗ ପକ୍ଷରେ ସମ୍ଭବପର ନଥିବାରୁ ଭାରତ ଗଭର୍ଣ୍ଣମେଣ୍ଟଙ୍କ ନିର୍ଦ୍ଦେଶ କ୍ରମେ ସ୍ଥାନୀୟ ସମିତିମାନଙ୍କ ଉପରେ ପୁସ୍ତକ ନିର୍ବାଚନଭାର ରହିବା ଉଚିତ । ଅନେକ ସ୍ଥଳରେ ଦେଖାଯାଏ, ସ୍କୁଲରେ ଯେଉଁସବୁ ପୁସ୍ତକ ବ୍ୟବହୃତ ହୁଏ ତାହା ଅପେକ୍ଷା ଭଲ ପୁସ୍ତକ ତାହା ଅପେକ୍ଷା ଭଲ ପୁସ୍ତକ ସେଠାରେ ପ୍ରଚଳିତ ହୋଇ ପାରନ୍ତା । ଏପରି ସ୍ଥଳରେ ଶିକ୍ଷାବିଭାଗ କିପରି ପୁସ୍ତକ ନିର୍ବାଚନ କରିପାରନ୍ତି, ତାହା ଜଣାଯାଉନାହିଁ । ସେ ଯାହାହେଉ, ଭାରତ ଗଭର୍ଣ୍ଣମେଣ୍ଟ ପ୍ରାଦେଶିକ ଗଭର୍ଣ୍ଣମେଣ୍ଟଙ୍କ ନିକଟକୁ ଯେପରି ପତ୍ର ଲେଖିଛନ୍ତି ତହିଁରୁ ଜଣାଯାଏ, ସ୍ତ୍ରୀଶିକ୍ଷା ବିସ୍ତାର ସମ୍ବନ୍ଧରେ ଆମ୍ଭମାନଙ୍କର ଗୋଟିଏ ଉଜ୍ଜ୍ୱଳ ଭବିଷ୍ୟତ ଅଛି ଏବଂ ଯେତେବେଳେ ଭାରତ ଗଭର୍ଣ୍ଣମେଣ୍ଟଙ୍କ ନିର୍ଦ୍ଦେଶକ୍ରମେ କାର୍ଯ୍ୟ କରାଯିବ, ତେତେବେଳେ ସାଧାରଣ ଲୋକେ ଅଗ୍ରସର ହୋଇ ସେମାନଙ୍କର ସାହାଯ୍ୟ ଓ ସହାନୁଭୂତି ପ୍ରଦାନ କରିବେ ।



# ବିଲାତପ୍ରବାସ

## ବିଲାତଯାତ୍ରାର କଳ୍ପନା

୧୮୯୭ ଖ୍ରୀଷ୍ଟାବ୍ଦରେ ମୋର ପିତା ଶ୍ରୀଯୁକ୍ତ ମଧୁସୂଦନ ଦାସ ସି.ଆଇ.ଇ ଯେତେବେଳେ ବିଲାତ ଯାତ୍ରା କରିଥିଲେ ତହିଁର କିଛିଦିନ ପୂର୍ବରୁ ମୁଁ ଏଫ୍.ଏ. ପରୀକ୍ଷା ଦେଇଥିଲି । କିନ୍ତୁ ପରୀକ୍ଷାର ଫଳ ବାହାରି ନଥିବାରୁ ଓ କି ଉଦ୍ଦେଶ୍ୟରେ ବିଲାତ ଯିବି ତାହା ସ୍ଥିର କରି ନଥିବାରୁ ମୁଁ ପିତାଙ୍କ ସଙ୍ଗେ ଯାଇ ପାରିଲି ନାହିଁ । ସେହି ସମୟରୁ ବିଲାତ ଯିବାର ଇଚ୍ଛା ସର୍ବଦା ମୋ ମନରେ ଜାଗ୍ରତ ଥିଲା । ସମୟ ସମୟ ଅନେକ ଭାରତୀୟ ରମଣୀ ବିଲାତ ଯିବା କଥା ଯେତେବେଳେ ବନ୍ଧୁମାନଙ୍କ ମୁଖରୁ ଶୁଣୁଥିଲି ବା ସମ୍ବାଦପତ୍ରରେ ପଢୁଥିଲି, ସେତେବେଳେ ମୋର ଆକାଂକ୍ଷା ବଳବତୀ ହେଉଥିଲା । ମନେ ମନେ ବିଚାରୁଥିଲି, ଯେବେ ଭଗବାନ୍ ସୁଦିନ ଦିଅନ୍ତି, ତେବେ ଯେଉଁ ଦେଶ ପୃଥିବୀରେ ଏତେଦୂର ପ୍ରତିଷ୍ଠାଲାଭ କରିଅଛି, ଯେଉଁ ଦେଶବାସୀ ମାନଙ୍କର କାର୍ଯ୍ୟକଳାପ ଦ୍ୱାରା ସମସ୍ତ ପୃଥିବୀ ମନ୍ତ୍ରମୁଗ୍ଧ ହୋଇଅଛି, ଯେଉଁ ଦେଶର ରୀତି ନୀତି ଆଚାର ବ୍ୟବହାର ଅନୁକରଣ କରିବାପାଇଁ ଆମ୍ଭେମାନେ ସର୍ବଦା ତତ୍ପର ଓ ଯେଉଁ ଦେଶ ଆମ୍ଭମାନଙ୍କ ମାତୃଭୂମିକୁ ଶାସନ କରୁଅଛି, ସେହି ଐଶ୍ୱର୍ଯ୍ୟଶାଳୀ ଦେଶ ଥରେ ସ୍ୱଚକ୍ଷୁରେ ଦେଖି ମୋର ବାସନା ପରିପୂର୍ଣ୍ଣ କରିବି ।

୧୯୦୬ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମକାଳରେ ମୁଁ କାର୍ଯ୍ୟୋପଲକ୍ଷରେ ପୁରୀ ଯାଇଥିଲି ସେଠାରେ ଜଣେ ବନ୍ଧୁଙ୍କଠାରୁ ଶୁଣିଲି ଯେ ବଙ୍ଗୀୟ ଗଭର୍ଣ୍ଣମେଣ୍ଟ ଆପଣା ବ୍ୟୟରେ ଦିଓଟି ଭାରତୀୟ ମହିଳାଙ୍କୁ ଦୁଇବର୍ଷ ବିଲାତରେ ଶିକ୍ଷାପ୍ରଣାଳୀ ଶିକ୍ଷା ଦେବା ପାଇଁ ପଠାଇବେ ବୋଲି ସ୍ଥିର କରିଅଛନ୍ତି । ସେଥିରୁ ଜଣଙ୍କ ନାମ ସରଳାବାଳା, ସେ ହିନ୍ଦୁ ବିଧବା । ମୁଁ ତାଙ୍କ ସଙ୍ଗେ ପୂର୍ବେ କଲିକତାର ବେଥୁନ୍ କଲେଜରେ ପଢୁଥିଲି । ସଭ୍ୟଦେଶର ଶିକ୍ଷାପ୍ରଣାଳୀ ଜାଣିବା ନିମନ୍ତେ ମୋର ଇତିମଧ୍ୟରେ ଭାରି ଆଗ୍ରହ ହୋଇଥିଲା । ମୋର ବାଲ୍ୟ-ସହଚରୀ ସରଳା ସେହି ଉଦ୍ଦେଶ୍ୟରେ ବିଲାତ ଯାଉଥିବାର ଶୁଣି ମୋ ମନ ଆନନ୍ଦରେ ନାଚି ଉଠିଲା ଓ ମୁଁ ବିଲାତ ଯିବା ନିମନ୍ତେ ମନରେ ସ୍ଥିର କଲି । ତତ୍ପରେ କାଳବିଳମ୍ବ ନକରି ମୁଁ କଟକକୁ ଆସି ପିତାଙ୍କ ନିକଟରେ ମୋର ବିଲାତ ଯିବା କଥା ପ୍ରସ୍ତାବ କଲି । ସିଏ ମୋର ପ୍ରସ୍ତାବକୁ ଅତି ଆଦର ସହକାରେ ଗ୍ରହଣ କଲେ ଓ ବିଲାତରେ ମୋର ଶିକ୍ଷାର ସମସ୍ତ ବ୍ୟୟଭାର ବହନ କରିବା ପାଇଁ ଅକୁଣ୍ଠିତ ଚିତ୍ତରେ ଅଙ୍ଗୀକାର କଲେ । ପଛକୁ ସ୍ଥିର ହେଲା, ଯେଉଁ ଦିଓଟି ମହିଳା ବିଲାତକୁ ଯାଉଅଛନ୍ତି, ମୁଁ ସେମାନଙ୍କ ସଙ୍ଗରେ ଯିବି ଓ ଗଭର୍ଣ୍ଣମେଣ୍ଟ ସେମାନଙ୍କୁ ଯେଉଁ ବିଦ୍ୟାଳୟରେ ପଢ଼ାଇବେ ମୁଁ ସେହି ବିଦ୍ୟାଳୟରେ ପଢ଼ିବି, ପିତା ସମସ୍ତ ବ୍ୟୟ ବହନ କରିବେ । ଆମ୍ଭେମାନେ ବିଚାରିଲୁ ଯେ

ସରକାର ବାହାଦୁର ଯେତେବେଳେ ଏ ଦୁଇଜଣଙ୍କୁ ବହୁବ୍ୟୟରେ ବିଲାତ ପଠାଉଅଛନ୍ତି, ଅବଶ୍ୟ ସରକାର ବାହାଦୂର ସେମାନଙ୍କୁ ଉତ୍କୃଷ୍ଟ ବିଦ୍ୟାଳୟରେ ପଢ଼ାଇବେ ଓ ଦୂର ବିଦେଶରେ ସେମାନେ ଯେପରି ସୁଖସ୍ୱଚ୍ଛନ୍ଦରେ ରହି ବିଦେଶବାସର କଷ୍ଟ ଭୁଲିଯିବେ, ଏଥିର ବିଶେଷ ବନ୍ଦୋବସ୍ତ କରିବେ । ଏମାନଙ୍କର କୌଣସି ପୀଡ଼ା ବା କଷ୍ଟ ହେଲେ ଏମାନଙ୍କ ବିଷୟ ବୁଝିବା ନିମନ୍ତେ ସରକାର ଅବଶ୍ୟ ସୁବନ୍ଦୋବସ୍ତ କରିବେ । ମୋ ପିତା କହିଲେ, ''ଦିଓଟି ରମଣୀଙ୍କ ସଙ୍ଗରେ ନିଃସହାୟ ଅବସ୍ଥାରେ ଅପରିଚିତ ଦୂର ବିଦେଶକୁ ଯିବା ପାଇଁ ମୁଁ ତୁମ୍ଭଙ୍କୁ ଛାଡ଼ି ଦେଇ ନପାରେଁ, କିନ୍ତୁ ସରକାର ବାହାଦୂର ବିଲାତରେ ତୁମ୍ଭର ଅଭିଭାବକ ହେବାପାଇଁ ଯେବେ ମଙ୍ଗିବେ, ତେବେ ତୁମ୍ଭଙ୍କୁ ବିଲାତ ପଠାଇବାରେ ମୋର କିଛି ଆପତ୍ତି ନାହିଁ ।

ସମସ୍ତ ତଥ୍ୟ ଜାଣିବା ପାଇଁ ମୁଁ ସରଳାଙ୍କଠାକୁ ପତ୍ର ଦେଲି । ସେ ଉତ୍ତର ଦେଲେ ଯେ ସେ ଓ ବମ୍ୱେଇ ଅଞ୍ଚଳରୁ ଜଣେ ମୁସଲମାନ ରମଣୀ ସରକାରଙ୍କଠାରୁ ବୃତ୍ତି ପାଇ ବିଲାତଯିବା କଥା ସ୍ଥିର ହୋଇଅଛି । କିନ୍ତୁ ୧୯୦୬ ସାଲ ସେପ୍ଟେମ୍ବର ମାସରେ ଯିବାକୁ ହେବ ଅଥବା ୧୯୦୭ ସାଲ ଜାନୁଆରୀ ମାସରେ ଯିବାକୁ ହେବ, ତାହା ସ୍ଥିର ହୋଇନାହିଁ ।

ଏ ବିଷୟରେ ନିଶ୍ଚିତ କଥା ଜାଣିବା ପାଇଁ ମୁଁ ଅବିଳମ୍ୱେ ବଙ୍ଗଳା ଶିକ୍ଷା ବିଭାଗର ଡାଇରେକ୍ଟର ଶ୍ରୀଯୁକ୍ତ ଅଲି ସାହେବଙ୍କ ସଙ୍ଗେ କଲିକତାଠାରେ ସାକ୍ଷାତ୍ କରି ତାଙ୍କଠାରୁ ବୁଝିଲି ଯେ ଏକଥା ମୌଖିକ ସ୍ଥିର ହୋଇଅଛି ସତ୍ୟ, କିନ୍ତୁ ବଙ୍ଗୀୟ ଗଭର୍ଣ୍ଣମେଣ୍ଟ ଏ ପର୍ଯ୍ୟନ୍ତ କୌଣସି ଲିଖିତ ଆଦେଶ ଦ୍ୱାରା ଏ ବିଷୟ ମଞ୍ଜୁର କଲାପରେ ଭାରତୀୟ ଗଭର୍ଣ୍ଣମେଣ୍ଟ ମଞ୍ଜୁରି ଆବଶ୍ୟକ । (ବଡ଼ଲାଟ୍ ସେତେବେଳେ ଶିମଳାରେ ଥାନ୍ତି ।) ଏ ମଞ୍ଜୁରି ହେଉଁ ହେଉଁ ଦିନକେତେ ଲାଗିବ । ତତ୍‌ପରେ ବିଲାତ ଯିବାର ଦିନ ସ୍ଥିର ହେବ । ସୁତରାଂ ୧୯୦୭ ଜାନୁଆରୀ ମାସରେ ଉପରୋକ୍ତ ଦୁଇଜଣ ରମଣୀ ବିଲାତ ଯିବାର ସମ୍ଭାବନା ଅଛି ଏଥିମଧ୍ୟରେ ଯିବାର ସମ୍ଭାବନା ନାହିଁ ।

ମୁଁ ମୋର ବିଲାତଯିବାର ଉଦ୍ଦେଶ୍ୟ ଏବଂ ପିତାଙ୍କର ପ୍ରସ୍ତାବ ଡିରେକ୍ଟର ସାହେବଙ୍କୁ କହିଲି । ସାହେବ ପଚାରିଲେ, ''ଶିକ୍ଷାଲାଭକରି ଫେରି ଆସି ତୁମ୍ଭେ କଣ କରିବ ?'' ମୁଁ ଉତ୍ତର କଲି, ''ଶିକ୍ଷାପ୍ରଣାଳୀ ଶିକ୍ଷାକରି ଫେରିଆସି ଦେଶରେ ସ୍ତ୍ରୀମାନଙ୍କୁ ଶିକ୍ଷାଦେବା ମୋର ଉଦ୍ଦେଶ୍ୟ ।'' ସାହେବ ମହୋଦୟ ମୋ କଥା ଶୁଣି ଭାରି ଆନନ୍ଦିତ ହେଲେ ଏବଂ ମତେ ଓ ମୋ ପିତାଙ୍କୁ ଅନ୍ତରର ସହିତ ଧନ୍ୟବାଦ ଦେଲେ । ମୁଁ ଶେଷରେ ସାହେବଙ୍କୁ ଅନୁରୋଧ କରି କହିଲି, ''ମହାଶୟ, ଆମ୍ଭେମାନେ ଗ୍ରୀଷ୍ମପ୍ରଧାନ ଦେଶର କନ୍ୟା । ଆପଣଙ୍କ ଦେଶ ଶୀତପ୍ରଧାନ ଦେଶ, ତହିଁରେ ପୁଣି ମୁଁ ଶୁଣିଛି ଯେ ଆପଣଙ୍କ ଦେଶରେ ଶୀତକାଳ ଅତି ଭୀଷଣ । ବିଶେଷତଃ ମୋର ସ୍ୱାସ୍ଥ୍ୟ ଭଲ ନୁହେଁ । ଏ ଦୁର୍ବଳ ଶରୀରରେ ଶୀତକାଳରେ ଆପଣଙ୍କ ଦେଶକୁ ପ୍ରଥମେ ଗଲେ ମୁଁ ତୁରନ୍ତ ଶୀତରେ ପ୍ରାଣ ହରାଇବି ବୋଲି ମୋର ଭୟ ହେଉଅଛି । ସରକାର ଯେଉଁ ଦୁଇଜଣଙ୍କୁ ପଠାଉଛନ୍ତି, ସେମାନେ ସରକାରଙ୍କ ଆଜ୍ଞା ଅନୁସାରେ ଶୀତକାଳରେ ଅବଶ୍ୟ

ବିଲାତ ଯିବେ, କିନ୍ତୁ ଯେବେ ଆଗାମୀ ଜାନୁଆରୀ ମାସରେ ସେମାନଙ୍କ ଯିବା କଥା ହୁଏ, ତାହାହେଲେ ମୋର ବିଲାତଯିବା କଥା ହେବନାହିଁ । ଆପଣ ଇଚ୍ଛାକଲେ ଏକ ସପ୍ତାହ ମଧ୍ୟରେ ବଙ୍ଗୀୟ ଗଭର୍ଣ୍ଣମେଣ୍ଟ ଓ ଭାରତୀୟ ଗଭର୍ଣ୍ଣମେଣ୍ଟଙ୍କଠାରୁ ମଞ୍ଜୁର ଅଣି ପାରିବେ ଓ ମତେ ତାର ଖବର ଦ୍ୱାରା (Telegraph) ଜଣାଇପାରିବେ । ତାହା ହେଲେ ଶୀତକାଳ ପୂର୍ବରୁ ଆମ୍ଭେମାନେ ବିଲାତ ଯାତ୍ରା କରି ପାରିବୁ ଓ ଶୀତକାଳ ପୂର୍ବରୁ ବିଲାତର ଜଳବାୟୁ ଆମ୍ଭେମାନଙ୍କ ଦେହରେ ସହିଗଲେ ଶୀତଋତୁ ବେଳକୁ ଆମ୍ଭମାନଙ୍କୁ ତେତେ କଷ୍ଟ ଓ ପୀଡ଼ା ଭୋଗକରିବାକୁ ହେବ ନାହିଁ ।

ଡିରେକ୍ଟର ସାହେବ ମୋ ପ୍ରସ୍ତାବରେ ସମ୍ମତ ହେଲେ । ମୁଁ ତାଙ୍କୁ ଅନେକ ଧନ୍ୟବାଦ ଦେଇ କଟକ ଫେରିଲି ଓ ପିତାଙ୍କୁ ସମସ୍ତ ବିଷୟ ଜଣାଇଲି । ପିତା ମତେ ବିଲାତ ଯିବାପାଇଁ ଅଶଙ୍କିତ ଚିତ୍ତରେ ଅନୁମତି ଦେଲେ । କଟକ ଫେରି ଆସିବାର ଆଠଦିନ ମଧ୍ୟରେ ଡିରେକ୍ଟର ମହୋଦୟ ଠାରୁ ଖବର ପାଇଲି ଯେ ଆମ୍ଭମାନଙ୍କର ବିଲାତଯିବା କଥା ବଡ଼ଲାଟ ମଞ୍ଜୁର କରିଅଛନ୍ତି । ଏହା ଶୁଣି ମୁଁ ଯତ୍‌ପରୋନାସ୍ତି ଆନନ୍ଦିତ ହେଲି ଓ ବିଲାତ ଯିବାର ସମସ୍ତ ଆନୁପୂର୍ବିକ ବନ୍ଦୋବସ୍ତ କରିବାକୁ ଲାଗିଲି । କ୍ରମଶଃ ବନ୍ଧୁମାନଙ୍କ ନିକଟରୁ ବିଦାୟ ଗ୍ରହଣ କଲି । ଜଣେ ବନ୍ଧୁ କହିଲେ, ''ବୃଦ୍ଧ ପିତାଙ୍କୁ ଏ ବୟସରେ ଏକାକୀ ରଖି ବିଲାତ ଯିବା ତୁମ୍ଭର ଉଚିତ ନୁହେଁ । ଦୁଇବର୍ଷ ତ ଅଳ୍ପ ସମୟ ନୁହେଁ, (ଈଶ୍ୱର ନ କରନ୍ତୁ) ଏଥିମଧ୍ୟରେ ତୁମ୍ଭେ ବୃଦ୍ଧପିତାଙ୍କୁ ହରାଇ ପାର ।'' ମୁଁ ଭାବିଲି, ''ବୃଦ୍ଧପିତାଙ୍କୁ ଛାଡ଼ି ମୁଁ କାହିଁକି ଯାଉଅଛି ? ସେଠାରେ ନୂତନ କଥା ଶିକ୍ଷା କରିବି ? ଯେବେ ଶିକ୍ଷାସାରି ଫେରି ଆସି ପିତାଙ୍କୁ ନ ଦେଖିବି, ଶିକ୍ଷାଲାଭ କରି କି ଫଳହେବ ?' ଏହିପରି କେତେଗୁଡ଼ିଏ ଦୁଶ୍ଚିନ୍ତା ମୋ ମନକୁ ବ୍ୟାକୁଳ କଲା । ପରକ୍ଷଣରେ ପିତାଙ୍କର ବହୁମୂଲ୍ୟ ଉପଦେଶଗୁଡ଼ିକ ମୋର ମନେ ପଡ଼ିଲା, ତେତେବେଳେ ସମସ୍ତ ଦୁଶ୍ଚିନ୍ତା ଦୂର ହୋଇଗଲା । ମୁଁ ଭାବିଲି ''ମୁଁ ବଙ୍ଗଦେଶରେ ଜନ୍ମଗ୍ରହଣ କରିଅଛି ସତ୍ୟ କିନ୍ତୁ ଉତ୍କଳମାତାଙ୍କ କ୍ରୋଡରେ ପ୍ରତିପାଳିତ ହୋଇଥିବାରୁ ମୁଁ ଉତ୍କଳଦେଶକୁ ଅଧିକତର ସ୍ନେହ କରେ । ଯେଉଁ ଦେଶଲାଗି ପିତା ମନ ପ୍ରାଣ ଦେଇ ଏ ବୃଦ୍ଧ ବୟସରେ ରୁଗଣ୍ ଶରୀରରେ ସୁଦ୍ଧା ଅନବରତ ପରିଶ୍ରମ କରୁଅଛନ୍ତି, ଯେଉଁ ଦେଶରେ ସ୍ତ୍ରୀଶିକ୍ଷା ବିସ୍ତାର କରିବ ମୋ ପିତାଙ୍କର ଗୋଟିଏ ପ୍ରଧାନ ଉଦ୍ଦେଶ୍ୟ, ମୋ ପିତାଙ୍କର ମୋ ପ୍ରତି ଯେଉଁ ଅକୃତ୍ରିମ ସ୍ନେହ ଅନ୍ତତଃ ତହିଁର ପ୍ରତିଦାନ ସ୍ୱରୂପ ସେ ଦେଶ ପ୍ରତି ମୋର କିଛି କରିବା ଉଚିତ । ବିଲାତରୁ ଶିକ୍ଷାଲାଭ କରି ଫେରିଆସି ପିତାଙ୍କର ଗୋଟିଏ ମହତ୍ ଉଦ୍ଦେଶ୍ୟ ସାଧନ କରିବା ପାଇଁ ଯଦି ମୁଁ କିଞ୍ଚିତ ପରିମାଣରେ ହେଲେ କୃତକାର୍ଯ୍ୟ ହେବି, ତେବେ ମୋ ଜୀବନ ସାର୍ଥକ ହେବ । ଯେଉଁମାନେ ସର୍ବଶକ୍ତିମାନ ଭଗବାନ୍‌ଙ୍କଠାରେ ଶରଣଗତ ହୋଇ କର୍ତ୍ତବ୍ୟ କରିବାପାଇଁ ଆଶାବାନ୍ଧି କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତି, ମଙ୍ଗଳମୟ ଭଗବାନ୍ ସେମାନଙ୍କୁ କଦାପି ବିମୁଖ ବା ନିରାଶ କରନ୍ତି ନାହିଁ । ଏହି ଭାବ ଉଦିତ ହେବା ମାତ୍ରକେ ମୋ ଦେହରେ ନବଶକ୍ତିର ସଞ୍ଚାର ହେଲା,

ନିରାଶା କେଉଁଆଡ଼େ ଉଭେଇ ଗଲା; ମୁଁ ଭାବିଲି, ଈଶ୍ୱରଙ୍କ କୃପାରୁ ମୁଁ ଫେରି ଆସି ପିତାଙ୍କୁ ଅବଶ୍ୟ ଦେଖିବି । ସେହି ମଙ୍ଗଳମୟ ବିଧାତାଙ୍କ ଅପାର କରୁଣା ଉପରେ ନିର୍ଭରକରି ହୃଦୟକୁ ତାଙ୍କରିଠାରେ ସମର୍ପଣ କରି, ସହାସ୍ୟବଦନରେ ବନ୍ଧୁବାନ୍ଧବଙ୍କଠାରୁ ବିଦାୟ ଗ୍ରହଣ କଲି ଓ ୧୯୪୬ ସାଲ ଅଗଷ୍ଟ ମାସ ୨୭ ରିଖ ଦିନ ପିତା, ଭ୍ରାତା ଓ ଭଗିନୀଙ୍କ ସହିତ ଅପରାହ୍ଣ ୬ଘଣ୍ଟା ସମୟରେ କଲିକତା ଅଭିମୁଖେ ଯାତ୍ରାକଲି । ସେହି ସମୟରେ ମତେ ବିଦାୟ ଦେବା ନିମନ୍ତେ ଅନେକଗୁଡ଼ିଏ ବନ୍ଧୁ କଟକ ଷ୍ଟେସନଠାକୁ ଆସିଥିଲେ । ଆଶାର କଥା କହି ସେମାନଙ୍କ ଠାରୁ ବାଷ୍ପପୂର୍ଣ୍ଣ ନେତ୍ରରେ ବିଦାୟ ନେଲି ।



## ବମ୍ବେ

ଯେଉଁଦିନ କଟକ ଛାଡ଼ିଲି, ସେଦିନ ଅବିଶ୍ରାନ୍ତ ବାରିଧାରା ବର୍ଷୁଥିଲା । କଲିକତାରେ ପହଞ୍ଚି ମୋର ସହଯାତ୍ରିକା ସରଳାଙ୍କୁ ସଙ୍ଗରେ ଘେନି ବମ୍ବେ ଯାତ୍ରା କଲି । ପିତା, ଭ୍ରାତା ଓ ଭଗିନୀ ମଧ୍ୟ ସଙ୍ଗରେ ଥିଲେ । କଟକଠାରୁ ବମ୍ବେ ପର୍ଯ୍ୟନ୍ତ ସୂର୍ଯ୍ୟଦେବଙ୍କ ସହିତ ଆମ୍ଭମାନଙ୍କର ସାକ୍ଷାତ୍ ହୋଇନାହିଁ । ଭାରତରେ ଥାଉଁ ଥାଉଁ ଆମ୍ଭେମାନେ ବିଲାତର ନମୁନା ପାଇଲୁଁ । ଅଗଷ୍ଟମାସ ୩୦ ତାରିଖ ଦିନ ଆମ୍ଭେମାନେ ବମ୍ବେଠାରେ ପହଞ୍ଚିଲୁ । ଆମ୍ଭମାନଙ୍କର ଅନ୍ୟତମ ସହଯାତ୍ରିକା କୁମାରୀ ଅଡ଼ିଆ ଫାଇଜି ଜାତିରେ ମୁସଲମାନ, ବାସସ୍ଥାନ ବମ୍ବେ । ସେଠାରେ କୁମାରୀଙ୍କ ସଙ୍ଗେ ସାକ୍ଷାତ୍ ହେଲା ।

ସେଦିନ କୁମାରୀ ଫାଇଜି ମତେ ଓ ସରଳାଙ୍କୁ ତାଙ୍କ ସଙ୍ଗେ ଚା ପାନ କରିବାପାଇଁ ନିମନ୍ତ୍ରଣ ଦେଲେ । ଅପରାହ୍ଣରେ ଆମ୍ଭେମାନେ ନିମନ୍ତ୍ରଣ ରକ୍ଷାକରିବା ନିମନ୍ତେ ତାଙ୍କ ଘରକୁ ଗଲୁଁ । କୁମାରୀ ଫାଇଜିଙ୍କୁ ଦେଖି ବାଦଶାହୀ ଅମଳର ବେଶଭୁଷା କଳ୍ପନାରେ ଅଙ୍କିତ ହୋଇଗଲା । କୁମାରୀଙ୍କର ପରିଧାନ ଆସମାନି ରଙ୍ଗର ପୋଷୋୟଜି ଶାଢ଼ୀ । ବେଶବିନ୍ୟାସର ପରିପାଟ୍ୟ ଓ ଆଡ଼ମ୍ବର ଦେଖି ମୁଁ ମୋହିତ ଓ ସ୍ତବ୍ଧ ହୋଇଗଲି । ସୌନ୍ଦର୍ଯ୍ୟ ଓ ବେଶଭୂଷା ଦେଖି ମୁଁ ଫାଇଜିଙ୍କୁ ଏକ ଧ୍ୟାନରେ ଅନାଇ ରହିଲି । କଥାବାର୍ତ୍ତା କରିବା ବିଷୟରେ ମଧ୍ୟ ଫାଇଜି ବିଶେଷ ପଟୁ । ଚାପାନ କରି ସାରି କେତେକ୍ଷଣ କଥାବାର୍ତ୍ତା ହେବା ପରେ ମୁଁ ଓ ସରଳା ବସାକୁ ଫେରିଲୁ । ସେପ୍ଟେମ୍ବର ମାସ ୧ ତାରିଖ ଦିନ ବମ୍ବେ ଠାରୁ ବିଲାତ ଅଭିମୁଖେ ଜାହାଜ ଚଢ଼ିବାର ସ୍ଥିର ହୋଇଥିଲା । ସେଦିନ ପ୍ରାତଃକାଳରେ ମନ ଅତି ବିଷର୍ଣ୍ଣ ଭାବ ଧାରଣ କଲା । ନିଜ ଦେଶକୁ ଛାଡ଼ି, ନିଜର ସ୍ନେହମୟ ଜ୍ଞାତି ସ୍ୱଜନଙ୍କଠାରୁ ଦୁଇବର୍ଷ ପାଇଁ ବିଦାୟ ନେଇ ଗୋଟିଏ ଅପରିଚିତ ଦେଶରେ ରହିବାକୁ ହେବ । ଯେଉଁ ପିତା ମତେ ମୋ ଜନ୍ମଭୂମିରୁ ଆଣି ଆପଣାର କନ୍ୟାପରି ଅତିସ୍ନେହ ଓ ଆଦରସହକାରେ ଲାଳନ ପାଳନ କରିଅଛନ୍ତି, ସେହି ପିତାଙ୍କୁ ବୃଦ୍ଧସମୟରେ ଏକାକୀ ଛାଡ଼ିଯିବି । ଏହି ସମସ୍ତ ଭାବନା ମନକୁ ସେଦିନ ଘାଣ୍ଟି

ପକାଇଲା । ସେଦିନର ଭାବନା ଆଜି ସୁଦ୍ଧା ମନେ ପଡ଼ିଗଲେ ଆଖିରୁ ଲୁହ ବହେ । ମୋର ଅଶ୍ରୁପୂର୍ଣ୍ଣ ନୟନ ଦେଖି ପିତା କହିଲେ, ''ଶୈଳ ! ଯେବେ ଯିବାକୁ ମନ ବଳୁନାହିଁ, ଚାଲ ଏହିଠାରୁ ଘରକୁ ଫେରିଯିବା ।'' ଅବଶେଷରେ ଯେତେବେଳେ ବୁଝିପାରିଲେ ଯେ ତାହା ଅନିଚ୍ଛାର ଅଶ୍ରୁ ନୁହେଁ, କିନ୍ତୁ ପ୍ରିୟଜନ-ବିଚ୍ଛେଦ ଜନିତ ସ୍ୱାଭାବିକ ଅଶ୍ରୁ ଓ ଯେତେବେଳେ ବୁଝିପାରିଲେ ଯେ ସ୍ନେହ ବନ୍ଧନ ଓ ଦେଶର ମାୟାକୁ ଏଡ଼ି ମୁଁ ଯିବା ପାଇଁ ଦୃଢ଼ ପ୍ରତିଜ୍ଞା କରିଅଛି, ସେତେବେଳେ ସେ ଈଶ୍ୱରଙ୍କ ଅଭୟପାଦପଦ୍ମରେ ମତେ ସମର୍ପଣ କରି, ମତେ ଓ ମୋର ସହଚରୀଙ୍କୁ ଆଶୀର୍ବାଦ କରି ବିଦାୟ ଦେଲେ ; କହିଲେ,''ପ୍ରଭୋ ! ତୁମ୍ଭର ଇଚ୍ଛା ପୂର୍ଣ୍ଣହେଉ, ଆମ୍ଭେମାନେ କ୍ଷୁଦ୍ର ଜୀବ, ତୁମ୍ଭର ଇଚ୍ଛା ବୁଝିବା ଆମ୍ଭମାନଙ୍କ ସାଧ୍ୟାତୀତ ।'' ଯିବା ସମୟରେ ପିତା ସରଳାଙ୍କୁ କହିଲେ, '' ସରକାର ଅବଶ୍ୟ ତୁମ୍ଭମାନଙ୍କର ଯପୃରୋନାସ୍ତି ଯତ୍ନ କରିବେ । ନିୟମିତରୂପେ ତୁମ୍ଭମାନଙ୍କର କୁଶଳ ସମ୍ବାଦ ମତେ ଜଣାଉଥିବ । ଶୈଳର କୌଣସି ପୀଡ଼ା ହେଲେ ତତ୍‌କ୍ଷଣାତ୍ ମୋ ନିକଟକୁ ସମ୍ବାଦ ପଠାଇବ ।''

ଆମ୍ଭେମାନେ ବସାରୁ ଘୋଡ଼ାଗାଡ଼ିରେ ଦିନ ୧୨ଟା ସମୟରେ ବମ୍ବେଇର 'ବାଲେଡ଼' ନାମକ ବନ୍ଦରଠାରେ ଉପସ୍ଥିତ ହେଲୁ । ଟମାସ୍ କୁକ୍ ନାମକ ଏକ କୋମ୍ପାନୀଙ୍କଦ୍ୱାରା ଆମ୍ଭେମାନେ ବିଲାତ ଯିବାପାଇଁ ଟିକଟ କିଣିଥିଲୁଁ । ଆମ୍ଭେମାନେ ବନ୍ଦରଠାରେ ପହଞ୍ଚିବା ପୂର୍ବରୁ ଉକ୍ତ କୋମ୍ପାନୀ ତରଫରୁ କର୍ମଚାରୀମାନଙ୍କର ଚମଡ଼ାବାକ୍ସ ଗୁଡ଼ିକ ଜାହାଜକୁ ପଠାଇଦେଇଥିଲେ । ସୁତରାଂ ଆମ୍ଭମାନଙ୍କ ସଙ୍ଗରେ ଗୋଟିଏ ଲେଖାଁଏ ବ୍ୟାଗଛଡ଼ା ଆଉ କିଛି ନଥିଲା । ସେହି ବ୍ୟାଗଟିମାନ ଧରି ଆମ୍ଭେମାନେ ବାହାରିଲୁଁ ।

ଭାରତ ପ୍ଳେଗ ରୋଗରେ ଆକ୍ରାନ୍ତ ହୋଇଅଛି । ବଲାତ ଯିବାକୁ ହେଲେ ଯାତ୍ରୀମାନଙ୍କୁ ଡାକ୍ତରମାଇନା ହେବାକୁ ପଡ଼େ । ଦେଖିଲୁ ଯେ ଆମ୍ଭମାନଙ୍କ ନାଡ଼ି ପରୀକ୍ଷା କରିବା ପାଇଁ ଜଣେ ଡାକ୍ତରାଣୀ ମେମ୍ ଗୋଟିଏ କାଷ୍ଠାସନରେ ପିତୁଳାଟିଏ ପରି ବସିଛନ୍ତି । ମହିଳା ଯାତ୍ରୀମାନଙ୍କୁ ସେ ଗୋଟି ଗୋଟି କରି ନାଡ଼ି ଟିପି ଗୋଟିଏ ଲୁହାବାଡ଼ି ଦିଆ ପିଞ୍ଜରାରେ ପୁରାଉଅଛନ୍ତି ଓ ହାତରେ ଖଣ୍ଡିଏ ଲେଖାଏଁ ପାସ୍ (ଟିକଟ) ଦେଉଅଛନ୍ତି । ଯେଉଁ ସ୍ୱଜନ ଓ ବନ୍ଧୁମାନେ ଯାତ୍ରୀମାନଙ୍କୁ ଛାଡ଼ି ଦେବାପାଇଁ ବନ୍ଦର ପର୍ଯ୍ୟନ୍ତ ଆସିଥାନ୍ତି, ସେହିଠାରୁ ସେମାନେ ଯାତ୍ରୀମାନଙ୍କଠାରୁ ଶେଷ ବିଦାୟ ନିଅନ୍ତି । ସେହି ଟିକଟଖଣ୍ଡିମାନ ହାତରେ ଧରି, ଆମ୍ଭେମାନେ ସେହି ପିଞ୍ଜରାରେ ପଶିଲୁଁ ଓ ସଜଳନୟନରେ ଆତ୍ମୀୟ ସ୍ୱଜନମାନଙ୍କୁ ଅନାଇ ରହିଲୁଁ । ସେହି ପିଞ୍ଜରା ମଧରେ ଦେଖିଲି ଯେ ପିଞ୍ଜରାରେ ଯେତେଗୁଡ଼ିଏ ରମଣୀଥିଲେ ସମସ୍ତଙ୍କର ଚକ୍ଷୁ ଲୋତକପୂର୍ଣ୍ଣ । ସେ ମୁହୂର୍ତ୍ତର ଭାବ ବର୍ଣ୍ଣନା କରିବାର ଶକ୍ତି ମୋର ନାହିଁ । ସମ୍ମୁଖରେ ଅନନ୍ତ ସାଗର ଏକ ଦିଗରେ ସ୍ୱଦେଶ ଓ ସ୍ୱଜନ, ଅପର ଦିଗରେ ଅପରିଚିତ ବିଦେଶ ଓ ବହୁଦିନବ୍ୟାପୀ ବିଦେଶବାସ, ଏଣେ ଆମ୍ଭେମାନେ ପଶୁଶାଳାର ପଶୁତୁଲ୍ୟ ପିଞ୍ଜରାବଦ୍ଧ ହୋଇଅଛୁଁ । ଏସବୁ ଦୃଶ୍ୟ ଓ ଭାବନା ସହସା ମନକୁ ବ୍ୟାକୁଳ କରିପକାଇଲା । କେତେ

ଅତୀତର ସ୍ନେହପୂର୍ଣ୍ଣ ସ୍ମୃତି ମନରେ ଅଙ୍କିତ ହୋଇଗଲା । ସୁଦୂର ଭବିଷ୍ୟତର ଅନିଶ୍ଚିତ ଭାବନା ମନକୁ ଘାଣ୍ଟି ପକାଇଲା ।

ବଡ଼ ବଡ଼ ଜାହାଜଗୁଡ଼ିକ କୂଳକୁ ଆସି ପାରେ ନାହିଁ, କୂଳଠାରୁ କେତେକ ଦୂରରେ ଗଭୀର ଜଳରେ ଥାଏ । ସେ ଜାହାଜରେ ଚଢ଼ିବାକୁ ହେଲେ ପ୍ରଥମେ କୂଳରୁ ଛୋଟ ଧୂଆଁକଳ ବୋଟରେ ଯିବାକୁ ହୁଏ । ଆମ୍ଭେମାନେ କେତେକ୍ଷଣ ପିଞ୍ଜରାବଦ୍ଧ ପଶୁମାନଙ୍କ ଦଶା ଭୋଗ କରିବା ପରେ ଛୋଟ ଧୂଆଁକଳର ଆହ୍ୱାନସୂଚକ ବଂଶୀ ବାଜିଉଠିଲା । ମୁଁ ମୋର ବାଲ୍ୟସହଚରୀ ସରଳାଙ୍କ ହାତ ଧରି ସେହି ବୋଟରେ ଚଢ଼ିଲି ଓ ଯେତେବେଳ ପର୍ଯ୍ୟନ୍ତ କୂଳସ୍ଥିତ ଆତ୍ମୀୟମାନଙ୍କ ଛାୟା ଦୃଷ୍ଟିଗୋଚର ହେଲା, ସେତେକ୍ଷଣ ପର୍ଯ୍ୟନ୍ତ ସତୃଷ୍ଣନୟନରେ କୂଳ ଆଡ଼କୁ ଏକଧ୍ୟାନରେ ଚାହିଁ ରହିଲି । ସେ ଦିନର ଦୃଶ୍ୟ ଓ ଭାବନା ହୃଦୟରୁ କଦାପି ଲିଭିବ ନାହିଁ । ଭାବନାରୂପ ଘୂର୍ଣ୍ଣିବାୟୁ ମନକୁ କେଉଁଆଡ଼େ ଉଡ଼ାଇ ନେଇଗଲା । ସେତେବେଳେ ମନକୁ ମୋର ଆୟତ୍ତ ରଖିପାରିଲାନାହିଁ । ଆଶା, ନିରାଶା, ହର୍ଷ, ବିଷାଦ, ଶଙ୍କା, ସ୍ନେହ, ହୃଦୟକୁ ଯୁଗପତ୍ ଅଧିକାର କଲା । ସେ ଦିନର କଥା ମନେ ପଡ଼ିଲେ ଆଜି ମଧ୍ୟ ହୃଦୟର ଅନ୍ତରତମ ପ୍ରଦେଶ କାନ୍ଦିଉଠେ ।





ମଧୁସୂଦନଙ୍କ ବାସଭବନ

# ବିଲାତପ୍ରବାସ (୨)

## ଜଳପଥ

ଚାହୁଁ ଚାହୁଁ ଆମ୍ଭମାନଙ୍କ ଡଙ୍ଗା ବଡ଼ ଜାହାଜ ନିକଟରେ ଲାଗିଲା । ଏହି ଜାହାଜଟିର ନାମ "ମାଲ୍‌ଡ୍ରେରିଆ" । ଆମ୍ଭେମାନେ ଯେଝା ବ୍ୟାଗ ଖଣ୍ଡିକ ହାତରେ ଧରି ବଡ଼ ଜାହାଜକୁ ଉଠିଲୁ । ଦେଖିଲୁ ପୁଲିଶ ପ୍ରହରୀମାନେ ଶ୍ରେଣୀବଦ୍ଧ ହୋଇ ଠିଆହୋଇ ଯାତ୍ରୀ ମାନଙ୍କ ଠାରୁ ଡାକ୍ତରଙ୍କ ପ୍ରଦତ୍ତ ପାଶଖଣ୍ଡିମାନ ନେଉଅଛନ୍ତି ଓ ଯାତ୍ରୀମାନଙ୍କୁ ଜାହାଜ ଭିତରକୁ ଛାଡ଼ିଦେଉଅଛନ୍ତି ।

ଆମ୍ଭମାନଙ୍କ ଜାହାଜଟି ସୁବୃହତ ଓ ସୁସଜ୍ଜିତ । ଯାତ୍ରୀମାନଙ୍କ ସୁଖ ସ୍ୱଚ୍ଛନ୍ଦତା ପ୍ରତି ଦୃଷ୍ଟିରଖିବା ପାଇଁ ଏବଂ ଡାକହାକ ଶୁଣିବାପାଇଁ ଜାହାଜରେ ଅନେକଗୁଡ଼ିକଏ ଚାକର ଚାକରାଣୀ ଥାନ୍ତି । ଯାତ୍ରୀମାନଙ୍କ ପ୍ରତି ଏମାନଙ୍କ ବ୍ୟବହାର ଅତି ଭଦ୍ର । ଆମ୍ଭମାନଙ୍କ ନିମନ୍ତେ ନିର୍ଦ୍ଦିଷ୍ଟ ହୋଇଥିବା କୋଠରି ଦେଖାଇ ଦେବା ପାଇଁ ଜଣେ ଭୃତ୍ୟକୁ କହିବା ମାତ୍ରକେ ସେ କୋଠରି ଦେଖାଇଦେଲା । ଆମ୍ଭମାନଙ୍କ ଜିନିଷ ସବୁ ଆମ୍ଭମାନଙ୍କ ଆସିବା ପୂର୍ବରୁ ଜାହାଜକୁ ଆସିଥିଲା । ସେଗୁଡ଼ିକ ନିର୍ଦ୍ଦିଷ୍ଟ କୋଠରି ମଧ୍ୟରେ ରଖାଯାଇଥିବାର ଦେଖିଲୁଁ ।

ଏ ସୁବୃହତ୍ ଜାହାଜଟି ଛ ମହଲା । ଆମ୍ଭମାନଙ୍କ ନିମନ୍ତେ ଦୋମହଲାରେ କୋଠରୀ ନିର୍ଦ୍ଦିଷ୍ଟ ହୋଇଥିଲା । ସର୍ବୋଚ୍ଚ ମହଲାରେ ଜାହାଜର ଅଧ୍ୟକ୍ଷ ଥାନ୍ତି । ସେ ମହଲାରେ ଯେତେଗୁଡ଼ଏ କୋଠରି ଅଛି ତହିଁରେ ପୁରୁଷମାନେ ରହନ୍ତି, ସ୍ତ୍ରୀମାନଙ୍କୁ ସେଠାରେ ସ୍ଥାନ ଦିଆଯାଏ ନାହିଁ । ପଞ୍ଚମ ମହଲାରେ କେତେଗୁଡ଼ିଏ କୋଠରି ଖାଲିଥିଲା । ମୁଁ ଜାହାଜର ଅଧ୍ୟକ୍ଷଙ୍କୁ କୁହାବୋଲା କରି ଏଥିମଧ୍ୟରୁ ତିନିଜଣଙ୍କ ପାଇଁ ତିନିଗୋଟି କୋଠରି ବନ୍ଦୋବସ୍ତ କଲି । କେଉଁ କେଉଁ କୋଠରିର ଗୋଟିଏ ଲେଖାଁଏ ଖଟଥାଏ । କୌଣସି କୌଣସି କୋଠରିରେ ଯୋଡ଼ିଏ ଲେଖାଏଁ ଖଟ ଥାଏ । ପ୍ରତ୍ୟେକ ଖଟ ଉପରେ ସୁକୋମଳ ପକ୍ଷ-ପରିପୂର୍ଣ୍ଣ ଗଦି ଓ ତକିଆ ଏବଂ ତଦୁପରି ଦୁଗ୍ଧଫେନନିଭ ପରିଷ୍କୃତ ବିଛଣା ଚଦର ପଡ଼ିଥାଏ । ଯାତ୍ରୀମାନଙ୍କ ନିତ୍ୟ ବ୍ୟବହାରୋପଯୋଗୀ ଲୁଗାପଟା ରଖିବା ପାଇଁ ପ୍ରତି କୋଠରୀରେ ଗୋଟିଏ ଲେଖାଁଏ ଛୋଟ ଆଲମାରୀ ଥାଏ । ଆଲମାରୀ ଭିତରେ ଲୁଗାପଟା ରହେ ଓ ଉପର ପାଖଟି ଟେବୁଲ ପରି ବ୍ୟବହୃତ ହୋଇପାରେ । ମୁହଁ ହାତ ଧୋଇବାପାଇଁ ଗୋଟିଏ ଲେଖାଏଁ ପାଣିର କଳ ଗୋଟିଏ ଲେଖାଏଁ ସାନ କୁଣ୍ଡଥାଏ । ସେ କୁଣ୍ଡ ଉପରେ ମୁହଁ ହାତ ଧୋଇଲେ ମଇଳା ପାଣିଗୁଡ଼ିକ ଆପେ ଆପେ ତଳକୁ ବାହାରି ଯାଏ । ପ୍ରତି ଘରେ ଗୋଟିଏ ଲେଖାଏଁ ବଡ଼ ଦର୍ପଣ ଓ ଦର୍ପଣ ନିକଟରେ ତେଲ ସାବୁନ ପାନିଆ ଶିଶି ଇତ୍ୟାଦି ରଖିବାପାଇଁ ଗୋଟିଏ ଲେଖାଏଁ ସାନ ଆଲମାରୀ ଥାଏ ।

ବସିବାପାଇଁ ଖଣ୍ଡିଏ ସାନ ବେଞ୍ଚ ଓ ଲୁଗାପଟା ଟାଙ୍ଗିବାପାଇଁ କେତେଗୁଡ଼ିଏ ହୁକ ଥାଏ । ଜାହାଜରେ ଜଳ ପଥରେ ପନ୍ଦରଦିନ କଟାଇବାକୁ ହୁଏ । ଏଥିପାଇଁ ଯାତ୍ରୀମାନଙ୍କର ସୁବିଧାପାଇଁ କୋଠରିଗୁଡ଼ିକ ଉପରଲିଖିତ ରୂପେ ସଜ୍ଜିତ ହୋଇଥାଏ । ଫାଇକି ଗୋଟିଏ କୋଠରିରେ ରହିଲେ । ସରଳାଙ୍କୁ ଓ ମୋତେ ଯେଉଁ ଦିଓଟି କୋଠରି ମିଳିଥିଲା ତହିଁରୁ ଗୋଟିଏ କୋଠରୀରେ ଆମ ଦୁହିଁଙ୍କର ଶୋଇବା ବସିବାର ଘର କଲୁଁ । ଜାହାଜ ଲୋହିତ ସାଗରେ ପହଞ୍ଚିଲେ ଭାରି ଗରମବୋଧ ହେବ ବୋଲି ମୁଁ ଆଗରୁ ଶୁଣିଥିଲି । ସେଥିପାଇଁ ଆମ କୋଠରୀରେ ଗୋଟିଏ ବୈଦ୍ୟୁତିକ ପଙ୍ଖାର ବନ୍ଦୋବସ୍ତ କରିଥିଲି । ଯେଉଁ କୋଠରୀରେ ଲୁଗାପଟା ରଖିଲୁଁ, ସେ କୋଠରୀଟି ଗାଧୁଆ ଘରର ଅତି ନିକଟ ।

ମୁଁ କୋଠରୀକୁ ଯାଇ ପନ୍ଦରଦିନର ବ୍ୟବହାରୋପଯୋଗୀ ଲୁଗାପଟା ମୋ ସିନ୍ଧୁକରୁ ବାହା କରି ଜାହାଜରେ ଥିବା ଆଲମାରୀରେ ରଖିଲି । ତତ୍‌ପରେ ଆମେ ତିନିଜଣ ଜାହାଜ ପ୍ରଦକ୍ଷିଣ କରିବାକୁ ବାହାରିଲୁଁ । ଜାହାଜଟି ଖୁବ୍ ବଡ଼, ଦେଖିଲେ ଗୋଟିଏ କ୍ଷୁଦ୍ର ସହର ବୋଲି ମନେ ହୁଏ ଓ ଇଂରେମାନଙ୍କ ବୁଦ୍ଧିକୁ ଶତ ଶତ ଧନ୍ୟବାଦ ନଦେଇ ରହି ହୁଏ ନାହିଁ । ଜାହାଜରେ ଧୋବାଘର ଅଛି, ଡାକଘର ଅଛି । ଆମ୍ଭମାନଙ୍କ ଜାହାଜଟି ଡାକବୋହିବା ଜାହାଜ । ଡାକଘରେ ନାନା ଦେଶର ଚିଠିପତ୍ରର ବ୍ୟାଗ ଅଛି । ଅନେକ ଭାରତୀୟ ଓ ଶ୍ୱେତାଙ୍ଗ କର୍ମଚାରୀ ସେହି ଡାକଘରେ କାର୍ଯ୍ୟ କରୁଅଛନ୍ତି ଓ ଦେଶ ବିଦେଶ ଚିଠିବ୍ୟାଗଗୁଡ଼ିକୁ ଫିଟାଇ ଯେଉଁ ଚିଠି ଯେଉଁଠାକୁ ଯିବ ତାହା ବାଛି ଯଥାସ୍ଥାନରେ ସଜାଡ଼ି ରଖୁଅଛନ୍ତି ଏବଂ ଜାହାଜ ପ୍ରତି ବନ୍ଦରରେ ପହଞ୍ଚିବା ମାତ୍ରକେ ସେଠାରେ ସେ ବନ୍ଦରର ଡାକଗୁଡ଼ିକ ଓହ୍ଲାଇଦେଉଅଛନ୍ତି ।

ଡାକଘର ଦେଖିସାରି ଆମ୍ଭେମାନେ ଖାଇବାଘରକୁ ଗଲୁଁ । ଏଠାରେ ପ୍ରଥମ ଶ୍ରେଣୀର ଚାରିଶତ ଲୋକଙ୍କପାଇଁ ବସିବାର ଓ ଖାଇବାର ପୃଥକ୍ ପୃଥକ୍ ଆସନ ସଜ୍ଜିତ ହୋଇଅଛି । ଘରଟି ସୁନ୍ଦର ଭାବରେ ସଜ୍ଜିତ । ଯେଉଁଠାରେ ଯେଉଁ ରଙ୍ଗଦେଲେ ସୁନ୍ଦର ଦିଶିବ । ସେହିପରି ରଙ୍ଗର ଲତା ପୁଷ୍ପପତ୍ର ସେହି ଘରର କାନ୍ଥରେ ଅଙ୍କିତ ହୋଇଅଛି । ଘରର କାନ୍ଥ ଓ ଛାତ ଓକ୍ ନାମକ ଏକ ପ୍ରକାର କାଠରେ ନିର୍ମିତ । ଆମ୍ଭମାନଙ୍କ ଦେଶରେ ଅବଲୁସ କାଠର ଯେପରି ଆଦର, ବିଲାତରେ ଓକ୍ କାଠର ସେହିପରି । ଆଦର ଟେବୁଲ ଉପରେ ଖାନାଗୁଡ଼ିକ ପରିପାଟ ରୂପେ ସୁସଜ୍ଜିତ ହୋଇ ରଖାଯାଇଅଛି । ଆମ୍ଭେମାନେ ଯେଉଁ କୋମ୍ପାନୀ ଜାହାଜରେ ଯାଇଥିଲୁ, ଉକ୍ତ କୋମ୍ପାନୀଙ୍କ ଜାହାଜଗୁଡ଼ିକରେ ଯାତ୍ରୀମାନଙ୍କ ଖାଦ୍ୟ ପ୍ରତି ବିଶେଷଯତ୍ନ । ଆମେ ତିନିଜଣ ଖାନା ପାଖରେ ବସିଲୁ । କେତେ ଜାତୀୟ ଜୀବନ ଗୁଡ଼ିଏ ବଧକରି ବିଲାତ ମସଲା ସଂଯୋଗରେ ବିଲାତି ଖାନା ପ୍ରସ୍ତୁତ ହୋଇଅଛି । ଆମ୍ଭେମାନେ ଖାନା ଖାଇବୁ ନା ଘରର ଶୋଭା ଦେଖିବୁ, କିଛି ସ୍ଥିର କରିପାରିଲୁ ନାହିଁ । ଯାତ୍ରୀମାନେ ଖାଇବାପାଇଁ ସେ ଘରକୁ ଆସିଲେ । ସେମାନଙ୍କ ମଧ୍ୟରେ କେହି ''କାଲାଆଦମି'' ଅଛନ୍ତି କି ନାହିଁ, ଆମ୍ଭେମାନେ ଯାତ୍ରୀମାନଙ୍କ ଆଡ଼କୁ ଚାହିଁ ଏହି କଥା ଅନୁସନ୍ଧାନ କରିବାକୁ ଲାଗିଲୁଁ । ଦେଖିଲୁଁ ଯେ ଦୁଇଜଣ

କଳାମୁଖ ପୁରୁଷ ଯାତ୍ରୀ ଅଛନ୍ତି । କିନ୍ତୁ ସେମାନେ ଆମ୍ଭମାନଙ୍କର ଅପରିଚିତ । ତଥାପି ସେମାନଙ୍କୁ ଦେଖି ମନରେ ଆନନ୍ଦ ଜନ୍ମିଲା । ଭାବିଲୁ ଏମାନେତ ଆମ ଦେଶର ଲୋକ ! ଯେତେବେଳେ ଜାହାଜରେ କେବଳ ଗୋରାମାନଙ୍କୁ ଦେଖି ଦେଖି ମନରେ ବିତୃଷ୍ଣା ଜାତ ହେବ ଓ ଆତ୍ମୀୟ ସ୍ୱଜନଙ୍କପାଇଁ ପ୍ରାଣ ବ୍ୟାକୁଳ ହେବ, ସେତେବେଳେ ଏହି ଦିଓଟି ଦେଶୀୟ ମୁଖ ଦେଖିଲେ ମନ କେତେକ ପରିମାଣରେ ସୁସ୍ଥିର ହେବ । ଏହା ଭାବି ଖାଇବସିଲୁଁ । କିନ୍ତୁ ସେ ଖାନାଗୁଡ଼ିକ ଦେଖି ପ୍ରାଣ ବ୍ୟାକୁଳ ହୋଇଉଠିଲା, ତହିଁ ମଧ୍ୟରୁ ଆମ୍ଭମାନଙ୍କ ରୁଚିର ଉପଯୋଗୀ ସାମାନ୍ୟ କିଛି ଖାଦ୍ୟ ବାଛିକରି ଖାଇଲୁଁ ଓ ଅତୃପ୍ତଚିତ୍ତରେ ସେଠାରୁ ଉଠିଲୁଁ ।

ଜାହାଜର ନଙ୍ଗର ଉଠିଲା ଓ ଜାହାଜ ସମୁଦ୍ର ଆଡ଼କୁ କ୍ରମଶଃ ଅଗ୍ରସର ହେଲା । ସେତେବେଳେ ସୂର୍ଯ୍ୟ ଅସ୍ତପ୍ରାୟ । ମଙ୍ଗ ନିକଟରେ ଠିଆହୋଇ ମୁଁ ଭାରତବର୍ଷର ତୀର ଆଡ଼କୁ ଚାହିଁ ରହିଲି । ଦେଖିଲି, ଆକାଶ ମେଘାଚ୍ଛନ୍ନ, ସମୁଦ୍ରର ଜଳ ହରିତବର୍ଣ୍ଣ, ତୀରର ରେଖ ନୀଳାଭ ଓ ଉକ୍ତ ନିଳାଭ ରେଖା କ୍ରମଶଃ ଦିଗବଳୟରେ ମିଶିଯାଇଅଛି । କ୍ରମଶଃ କେମ୍ୱେର ବନ୍ଦର ଅଦୃଶ୍ୟ ହେଲା ଓ ଜାହାଜ ଗଭୀର ଜଳକୁ ଅଗ୍ରସର ହେଲା । ଆରବ ଉପସାଗରର ମହାତରଙ୍ଗମାନ ସୁବୃହତ ମାଲଡେରିୟା ଜାହାଜକୁ ଇତସ୍ତତଃ ଆନ୍ଦୋଳିତ କଲା । ତରଙ୍ଗ ଆଘାତରେ ଜାହାଜ ଦୋହଲିବାରୁ ଜାହାଜର ଛାତରେ ଠିଆହେବା ଅସମ୍ଭବ ହୋଇଉଠିଲା । ଏହା ଅନୁଭବ କରି ଆମ୍ଭେମାନେ ଆମ୍ଭମାନଙ୍କ କୋଠରି ଆଡ଼କୁ ସାବଧାନଭାବରେ ଅଗ୍ରସର ହେଲୁଁ ଓ କୋଠରି ଭିତରେ ଆଶ୍ରୟ ଗ୍ରହଣ କଲୁ । ଯେ ଯାହାର ଖଟ ଉପରେ ଯାଇ ଶୋଇ ପଡ଼ିଲୁ । ଜାହାଜର ଆନ୍ଦୋଳନ ଦେଖି ଅଧିକାଂଶ ଯାତ୍ରୀ ନିଜ ନିଜ କୋଠରୀରେ ଆଶ୍ରୟ ନେଲେ । ସମୁଦ୍ରର ତରଙ୍ଗ ବାଜି ଜାହାଜ ଭାରି ଦୋହଲେ । ଦୋହଲିବା ଯୋଗୁଁ ଅଧିକାଂଶ ଯାତ୍ରୀଙ୍କର ମୁଣ୍ଡବୁଲା ଓ ବାନ୍ତି ହୁଏ । ଏହି ରୋଗକୁ ଇଂରାଜୀରେ Sea-sickness (ସମୁଦ୍ରରୋଗ) କହନ୍ତି । ମୁଁ ଓ ସରଳା ଏହି ପୀଡ଼ାରେ ଆକ୍ରାନ୍ତ ହେଲୁଁ । ସରଳା ଏଥିପୂର୍ବେ କେବେ ସମୁଦ୍ର ଯାତ୍ରା କରିନଥିଲେ ଓ ଜାହାଜରେ ବସିଲେ ଯେ ଏ ରୋଗ ଧରେ, ତାଙ୍କୁ ଏକଥା ଜଣା ନଥିଲା । ସୁତରାଂ ହଠାତ୍ ଏପରି ହେବାର କାରଣ ବୁଝି ନପାରି ସେ ଅସ୍ଥିର ହୋଇପଡ଼ିଲେ ଓ କହିଲେ, ବାପରେ ବାପ୍ ! ଏପରି ହେବ ବୋଲି ଜାଣିଥିଲେ ମୁଁ ଆସିନଥାନ୍ତି ପରା !'' ଏ କଥା ଶୁଣି ମତେ ହସ ମାଡ଼ିଲା ଓ ମୁଁ ତାଙ୍କୁ ଏଥର କାରଣ ବୁଝାଇଦେଲି । ସେ ରାତିରେ ଆମ୍ଭମାନଙ୍କର ଆହାରାଦି କିଛି ହେଲା ନାହିଁ ।

ଯାତ୍ରୀମାନଙ୍କ କୋଠରିରେ ଗୋଟିଏ ଲେଖାଁଏ କଳଘଣ୍ଟା ଅଛି । ସେ ଘଣ୍ଟାକୁ ଟିପି ଦେଲେ ଚାକର ଚାକରାଣୀ ଆସି ଯାତ୍ରୀଙ୍କ ନିକଟରେ ଉପସ୍ଥିତ ହୁଅନ୍ତି । ମୁଁ ଚାକରାଣୀକୁ ଡାକି କହିଲି, ''ଆମ୍ଭମାନଙ୍କର ବିଶେଷ କଷ୍ଟ ହେଉଅଛି, ବର୍ତ୍ତମାନ କଣ କରିବୁ ? '' ସେ ହସି ହସି ଉତ୍ତର କଲା, ଆଜି ସମୁଦ୍ର ବେଶସ୍ଥିର । ତୁମ୍ଭମାନଙ୍କ ଦେହ ଅସୁସ୍ଥହୋଇଛି । ଏକଥା ଆଦୌ ଭାବନାକର ନାହିଁ ।'' ସେ ଏ ବିଷୟରେ ଆମ୍ଭମାନଙ୍କୁ ଉପଦେଶ ଦେଇ ଆମ୍ଭମାନଙ୍କ ଠାରୁ

ବିଦାୟ ନେଲେ । ଆମ୍ଭେମାନେ ନିଦ୍ରାଯିବାକୁ ଚେଷ୍ଟା କଲୁଁ । କିନ୍ତୁ କେତେ କଥା ମନେ ପଡ଼ିଲା, ମନ ଭାରି ଘାଣ୍ଟିହେଲା । ଅଗତ୍ୟା ଆଉ ନିଦ୍ରା ହେଲା ନାହିଁ । କୌଣସି ପ୍ରକାରେ ଅନିଦ୍ରା ଓ ତନ୍ଦ୍ରାରେ ସେ କାଳରାତ୍ରି କଟିଗଲା । ତହିଁ ଆରଦିନ ଭୋର ବେଳେ ଚାକରାଣୀ ଆସି ଆମ୍ଭମାନଙ୍କୁ ପଚାରିଲା, ''କଣ ଖାଇବ ?'' ଆମ୍ଭେମାନେ ଅନିଚ୍ଛା ପ୍ରକାଶ କରିବାରୁ ସେ କହିଲା, ''ନ ଖାଇଲେ ଅଧିକ କଷ୍ଟ ପାଇବ ।'' ଏହା କହି ଦୁଇ ତାଟିଆ ଖାଦ୍ୟ (Cornflour) ଆମ୍ଭମାନଙ୍କ ନିକଟରେ ରଖି ଦେଇଗଲା ।

ଚାକର ଚାକରାଣୀମାନେ ଯାତ୍ରୀମାନଙ୍କ କୋଠରିରେ ପ୍ରତିଦିନ ସକାଳେ କଫି, ଚା ଓ କିଛି ଫଳ ଖାଇବାପାଇଁ ରଖି ଦେଇଯାନ୍ତି । ଇଂରେଜମାନେ ମୁହଁ ହାତ ଧୋଇ ବିଛଣାରେ ଶୋଇ ଶୋଇ ସେ ଖାଦ୍ୟଗୁଡ଼ିକ ଉଦରସାତ୍ କରନ୍ତି । ଅଧୁଆ ମୁହଁରେ ଓ ଅଘସାପାଟିରେ କିଛି ଖାଇବାର ଆମ୍ଭମାନଙ୍କର ଅଭ୍ୟାସ ନାହିଁ, ସୁତରାଂ ବହୁ କଷ୍ଟରେ ବିଛଣାରୁ ଉଠି ମୁହଁ ହାତ ଧୋଇ ଉକ୍ତ ଖାଦ୍ୟରୁ ଦୁଇଚାମଚ ଲେଖାଏଁ ଖାଇଲୁଁ ।

ସରଳା ସେ ଦିନ ସ୍ନାନ କଲେ । ମୋ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ରଖି ମୁଁ ତାଙ୍କୁ ଅନୁକରଣ କରିବାକୁ ସାହସୀ ହେଲି ନାହିଁ । ସେ ମୁଣ୍ଡରେ ତେଲ ଲଗାଇ ସ୍ନାନ କଲେ ଓ ସ୍ନାନ କରି ସାରି ଖଣ୍ଡିଏ ଶାଢ଼ୀ ପିନ୍ଧି କେଶ ଉନ୍ମୁକ୍ତ କରି ଗୋଟିଏ ଚଉକିରେ ଗୋଡ଼ ଉଠାଇ ବସି ବାଳ ଶୁଖାଇଲେ; ମୁଁ ଦୁଇ ତିନିଟା କମ୍ବଳ ଓ ଶାଲ୍ ଘୋଡ଼ି ହୋଇ ଗୋଟିଏ ଚଉକିରେ ପଡ଼ିରହିଲି । ଚଉକି ଉପରେ ସିଧାହୋଇ ବସିପାରିଲି ନାହିଁ । ଆରବ ସାଗରରେ ବଡ଼ ବଡ଼ ଢେଉର ସୌନ୍ଦର୍ଯ୍ୟ ଏତେ ଅସ୍ଥିରତା ମଧ୍ୟରେ ସୁଦ୍ଧା ଆମ୍ଭମାନଙ୍କ ମନକୁ ଆନନ୍ଦରେ ନଚାଉଥିଲା । ପ୍ରକାଣ୍ଡ ଢେଉ ଗୁଡ଼ିକ ଜାହାଜର ଚାରିପାଖରେ ଆଘାତ କରୁଥିଲା । ଏଥିପାଇଁ ଜାହାଜ ଏଣେ ତେଣେ ସବେଗରେ ଆନ୍ଦୋଳିତ ହେଉଥିଲା । ଏ ଆନ୍ଦୋଳନର ମାହାତ୍ମ୍ୟ ଅନୁଭବୀ ବ୍ୟତିରେକେ ଅନ୍ୟ କେହି ବୁଝିବା ଅସମ୍ଭବ । ଆଉ ଗୋଟିଏ ଦୃଶ୍ୟ ଦେଖି ଆମ୍ଭମାନଙ୍କ ମନରେ ଅଭୂତପୂର୍ବ ଆନନ୍ଦ ଜାତ ହେଲା । ଆମ୍ଭମାନଙ୍କ ଜାହାଜଟି ଡାକ (Mail)ବୋହିବା ଜାହାଜ, ଏଥିପାଇଁ ଏହାର ଗତି ଅତି ଦ୍ରୁତ । ଜାହାଜର ଦ୍ରୁତଗତିଯୋଗୁଁ ସମୁଦ୍ରର ଅତଳ ବାରିରାଶି ଦ୍ୱିଧାବିଭକ୍ତ ହେବାରୁ ଢେଉ ଗୁଡ଼ିକ ଜାହାଜର ଦୁଇପାଖରେ ବାଜି ପ୍ରତିଘାତଦ୍ୱାରା ଉପରକୁ ଉଠୁଥିଲା ଓ ପରକ୍ଷଣରେ ନିମ୍ନମୁଖରେ ଶତଖଣ୍ଡ ହୋଇ ସମୁଦ୍ରବକ୍ଷରେ ପଡୁଥିଲା ସେହି ଉର୍ମିରାଶି ଉପରେ ସୂର୍ଯ୍ୟକିରଣ ପ୍ରତିଫଳିତ ହୋଇ ନାନାବର୍ଣ୍ଣର ଶତ ଇନ୍ଦ୍ରଧନୁର ବିଚିତ୍ରତା ପ୍ରକାଶ କରି ଆମ୍ଭମାନଙ୍କ ନୟନର ତୃପ୍ତି ସାଧନ କରୁଥିଲା । ସେ ନୈସର୍ଗିକ ଦୃଶ୍ୟ ଆମ୍ଭମାନଙ୍କ ଦୁର୍ବଳ ଶରୀରରେ ନବ ବଳର ସଞ୍ଚାର କରାଇ ଆମ୍ଭମାନଙ୍କୁ ବାସ୍ତବ ଜଗତର ଅନୁଭବଠାରୁ ବହୁଦୂରକୁ ଟାଣି ନେଉଥିଲା । ଆମ୍ଭେମାନେ ତିନିଜଣ ଯାକ ଜାହାଜର ଡେକ୍ (ଛାତ) ଉପରେ ବସି ଶୋଇ ଏକ ପ୍ରକାର କାଳଯାପନ କଲୁଁ । ସେ ଦିନ ଶାରୀରିକ ଦୁର୍ବଳତା ଓ ମନର ଅସ୍ଥିରତା ଯୋଗୁଁ ଆହାର ପ୍ରତି ବିଶେଷ ସ୍ପୃହା ନଥିଲା । ଦିନଯାକ ଛାତ ଉପରେ ବସି ରାତିରେ

ନିଜ ନିଜ କୋଠରିରେ ଆଶ୍ରୟ ନେଲୁଁ । ଏହିପରି ପାଞ୍ଚଦିନ ଅତୀତ ହେଲା । କେବଳ ଯେ ଆମ୍ଭମାନଙ୍କୁ ଏହି ଦଶା ଭୋଗ କରିବାକୁ ହୋଇଥିଲା, ତାହା ନୁହେଁ । ଇଂରେଜ ସହଯାତ୍ରୀଙ୍କ ମାନେ ମଧ୍ୟ ଏହି ପାଞ୍ଚଦିନ ମଧ୍ୟରେ ସେମାନଙ୍କ କୋଠରିରୁ ବାହାରକୁ ବାହାରି ନାହାନ୍ତି । ପୁରୁଷ ଯାତ୍ରୀମାନଙ୍କ ମଧ୍ୟରୁ କେହି କେହି ଇତିମଧ୍ୟରେ ଥରେ ଅଧେ ଜାହାଜର ଛାତ ଉପରକୁ ଆସୁଥାନ୍ତି । କଥା ପ୍ରସଙ୍ଗରେ ସେମାନେ କହୁଥାନ୍ତି ଯେ ଭଲ ପାଗ (Fine weather) ହୋଇଛି । ଏକଥା ଶୁଣି ଆମ୍ଭେମାନେ ହସୁଥାଉଁ ।

ସେପ୍ଟେମ୍ବର ୬ ତାରିଖ ସକାଳେ ବହୁଦୂରରୁ ଦିଗ୍‌ବଳୟରେ (Horizon) କଳାମେଘ ସ୍ୱରୂପ ଏଡ଼େନ୍ ନଗରର କ୍ଷୀଣ ଛାୟା ଆମ୍ଭମାନଙ୍କ ଦୃଷ୍ଟିଗୋଚର ହେଲା । ଯାତ୍ରୀମାନଙ୍କ ମଧ୍ୟରୁ କେହି କେହି ଦୁରବୀକ୍ଷଣ ଯନ୍ତ୍ର (Binocular) ସାହାଯ୍ୟରେ କେହି ବା ପ୍ରତ୍ୟଚକ୍ଷୁ ସାହାଯ୍ୟରେ ଏଡ଼େନ୍‌ନଗରକୁ ସ୍ପଷ୍ଟରୂପେ ଦେଖିବାଲାଗି ଚେଷ୍ଟା କଲେ । କ୍ରମେ ଆରବ ଉପସାଗର ପ୍ରଶାନ୍ତ ଭାବ ଧାରଣ କଲା । ଆମ୍ଭେମାନେ କ୍ରମଶଃ ଏଡ଼େନର ନିକଟବର୍ତ୍ତୀ ହେଲୁ; ଦୂରରୁ ଯାହା କଳାମେଘ ପରି ଦିଶୁଥିଲା, ନିକଟବର୍ତ୍ତୀ ହେବାରୁ ସେଗୁଡ଼ିକ ପାହାଡ଼ ବୋଲି ଜଣାଗଲା । ଦେଖିଲୁଁ, ସମୁଦ୍ର ମଧ୍ୟରେ ଧୀବରମାନଙ୍କର ଦୁଇ ଚାରିଖଣ୍ଡି ନୌକା ଯାଉଅଛି । ୫/୬ ଦିନ ପରେ ଅନୁଜ ବୃକ୍ଷଲତାଦି ଶୂନ୍ୟପାହାଡ଼ ଦେଖି ମନ ଆନନ୍ଦିତ ହେଲା । ଆମ୍ଭମାନଙ୍କ ଜାହାଜ ଏଡ଼େନ ବନ୍ଦରରେ ଲାଗିଲା । ଏଠାରେ ଜାହାଜ ତିନିଘଣ୍ଟା ମାତ୍ର ରହିଲା । ଇତିମଧ୍ୟରେ ମୁଁ ଓ ସରଳା ଜାହାଜ ଉପରେ ଠିଆହୋଇ ସୋମାଲି ପିଲାଙ୍କର ନାଚ ଦେଖିଲୁ ଓ ଯେଉଁ ଡାକଥଳିଗୁଡ଼ିକରେ ଚିଠିପତ୍ର ଏଡ଼େନ୍ ଠିକଣାରେ ଆସିଥିଲା, ସେ ଥଳିଗୁଡ଼ିକ ଆମ ଜାହାଜରୁ ଉତାରି ଦିଆଯିବାର ମଧ୍ୟ ଦେଖିଲୁଁ । ଏଡ଼େନ୍ ଛାଡ଼ି ଆମ୍ଭେମାନେ ଲୋହିତ ସାଗରରେ ପ୍ରବେଶ କଲୁଁ । ଏଠାରେ ସମୁଦ୍ର ଖୁବ୍ ସ୍ଥିର ଓ ଜାହାଜଟି ଆଉ ଆନ୍ଦୋଳିତ ହେଲା ନାହିଁ । ପିଲାଦିନେ ମୁଁ ମନରେ ବିଚାରୁଥିଲି ଯେ ଲୋହିତ ସାଗରର ଜଳ ଲାଲ ବର୍ଣ୍ଣ । କିନ୍ତୁ ଦେଖିଲି ଯେ ଏଠାର ଜଳର ବର୍ଣ୍ଣ ଆରବ ସାଗର ଜଳର ବର୍ଣ୍ଣ ସଙ୍ଗେ ସମାନ । ଏହି ସାଗରରେ ସ୍ଥାନେ ସ୍ଥାନେ ଜଳରାଶି ଭେଦ କରି ବୃକ୍ଷଲତାଦି ଶୂନ୍ୟ ପାହାଡ଼ମାନ ଉଠିଅଛି । ଦୂରରୁ ଦେଖିଲେ ବୋଧହୁଏ ଯେ ଏହି ପାହାଡ଼ଗୁଡ଼ିକ ଧାଡ଼ି ଧାଡ଼ି ହୋଇରହିଛି । ଏଗୁଡ଼ୀକ ମଧ୍ୟରେ ଜାହାଜ ଯିବାର ବାଟ ନାହିଁ । କିନ୍ତୁ କ୍ରମଶଃ ଜାହାଜ ଯେତିକି ଅଗ୍ରସର ହେଉଥାଏ, ଦେଖାଯାଏ ଯେ ଏ ପାହାଡ଼ଗୁଡ଼ିକ ଖଣ୍ଡ ଖଣ୍ଡ ହୋଇ ଅଲଗା ରହିଅଛି ଓ ପାହାଡ଼ ମାନଙ୍କ ମଧ୍ୟରେ ଜାହାଜ ଯିବା ପାଇଁ ବାଟ ଅଛି । ଏହିଠାରେ ଦେଖିଲୁଁ ଯେ ଏକପ୍ରକାର କ୍ଷୁଦ୍ର କ୍ଷୁଦ୍ର ମାଛଙ୍କର ବଡ଼ ଡେଣା ଅଛି ଓ ସେହି ଡେଣା ସାହାଯ୍ୟରେ ଏମାନେ ସମୁଦ୍ର ଉପରେ କିଛି କାଳପାଇଁ ଉଡୁ ଅଛନ୍ତି ଓ ପୁନର୍ବାର ପାଣିରେ ପଡୁଅଛନ୍ତି । ଏହି ମାଛଙ୍କୁ ଧରିବା ପାଇଁ ଏକ ଜାତୀୟ ପକ୍ଷୀ (ସୀଗଲ୍) ସେମାନଙ୍କ ପଛରେ ଗୋଡ଼ାଉ ଅଛନ୍ତି । ସ୍ଥାନେ ସ୍ଥାନେ ସମୁଦ୍ରରେ ବଡ଼ ବଡ଼ ମାଛ ପହଁରୁଥିବାର ମଧ୍ୟ ଦେଖିଲୁଁ ।

ଲୋହିତ ସାଗରରେ ଆରବ ଉପସାଗର ପରି ଢେଉ ନାହିଁ ଓ ସେଥିଯୋଗୁଁ ଜାହାଜ ଗତି କଲାବେଳେ ଆଉ ଆନ୍ଦୋଳିତ ହେଲା ନାହିଁ । ଯାତ୍ରୀମାନେ ଜାହାଜରେ ସ୍ୱଚ୍ଛନ୍ଦତା ବୋଧ କଲେ ଓ ନିଜ ନିଜ କୋଠରିରୁ ବାହାରି ଜାହାଜର ଛାତ ଉପରକୁ ଗୋଟି ଗୋଟି ହୋଇ ଆସିବାକୁ ଆରମ୍ଭ କଲେ । ଦେଖିଲୁଁ, ପ୍ରଥମଶ୍ରେଣୀରେ ଯାଉଥିବା ଯାତ୍ରୀଙ୍କର ସଂଖ୍ୟା ପ୍ରାୟ ଚାଳିଶ । ସେଥିମଧ୍ୟରେ ବିଚାରବିଭାଗର ଉଚ୍ଚପଦସ୍ଥ କେତେଗୁଡ଼ିଏ ସାହେବ ଥିଲେ । ଏମାନଙ୍କ ସଙ୍ଗେ ତିନିଜଣ ମେମ୍ ମଧ୍ୟ ଥିଲେ । ଏହି ସାହେବ ଓ ମେମ୍‌ମାନଙ୍କ ଆମ୍ଭମାନଙ୍କର ବିଶେଷ ଆଳାପ ପରିଚୟ ହେଲା ଓ ଅଧିକାଂଶ ସମୟରେ ମୁଁ, ସରଳା, ଫାଇଜି ବିବି ଓ ମେମ୍‌ମାନେ ଏକତ୍ର ବସି ଗଳ୍ପ କରି କାଳ କଟାଉଥିଲୁଁ । ମେମ୍‌ମାନଙ୍କ ସଙ୍ଗେ ଆମ୍ଭମାନଙ୍କର ଘନିଷ୍ଠତା ବଢ଼ିଲା ଓ ସେମାନେ ଆମ୍ଭମାନଙ୍କ ସଙ୍ଗେ ଘରୋଇଭାବରେ ମିଳିମିଶି ଅମାୟିକ ଭାବରେ କଥାବାର୍ତ୍ତା କରୁଥିଲେ । ଦିନେ ସେମାନଙ୍କ ମଧ୍ୟରୁ ଜଣେ ମେମ୍ ମୋତେ ପଚାରିଲେ ''ତୁମ୍ଭ ଦେଶର ସ୍ତ୍ରୀମାନେ ଆମ୍ଭମାନଙ୍କ ସଙ୍ଗେ ମିଳିମିଶି କଥାବାର୍ତ୍ତା ହେବାକୁ ଚାହାନ୍ତି କି ନାହିଁ, ଏ କଥା ଜାଣିବାକୁ ମୋର ଇଚ୍ଛା ବଳିଅଛି । ମୋର ବିଶ୍ୱାସ ଯେ ସେମାନେ ଆମ୍ଭମାନଙ୍କ ସଙ୍ଗେ ମିଶିବାକୁ ଘୃଣା କରନ୍ତି ।'' ମୁଁ ଉତ୍ତର କଲି, ''ତୁମ୍ଭର ଏ ବିଶ୍ୱାସ ସମ୍ପୂର୍ଣ୍ଣ ରୂପେ ଭ୍ରାନ୍ତ ଅଟେ । ସେମାନେ ମିଶିବାକୁ ଚାହାନ୍ତି, କିନ୍ତୁ କାଳେ ତୁମ୍ଭେମାନେ ତାଙ୍କୁ ଘୃଣା ଚକ୍ଷୁରେ ଦେଖିବ ଏହି ଭୟରେ ସେମାନେ ତୁମ୍ଭମାନଙ୍କ ସଙ୍ଗେ ମିଶନ୍ତି ନାହିଁ । ଦେଖ, ଆଜିକାଲି ତୁମ୍ଭଦେଶର ଅନେକ ଲୋକ ଆମ ଜାତିକୁ ଘୃଣାକରନ୍ତି ଓ ଆମ ଦେଶର ଲୋକଙ୍କ ସଙ୍ଗେ ଏପରି ଅଭଦ୍ର ବ୍ୟବହାର କରନ୍ତି ଯେ ଏହା ଦେଖି ଆମ୍ଭମାନଙ୍କ ମନରେ ହୁଏ, ତୁମ୍ଭେମାନେ ଆମ୍ଭମାନଙ୍କ ସଙ୍ଗରେ ବନ୍ଧୁ ଭାବରେ ମିଳିତ ହେବାକୁ କଦାପି ଇଚ୍ଛୁକ ନୁହଁ । ଏଥିପାଇଁ ଆମ୍ଭେମାନେ ଦୂରରେ ରହୁଁ ।'' ମେମ୍ କହିଲେ, ''ତୁମ୍ଭ ଦେଶର ପୁରୁଷମାନେ ଅନ୍ତଃପୁରର ସ୍ତ୍ରୀମାନଙ୍କ ପ୍ରତି ଉତ୍ତମ ବ୍ୟବହାର କରନ୍ତି ନାହିଁ ଓ ସେମାନଙ୍କୁ ଅନ୍ଦରମହଲରେ ବନ୍ଦକରି ରଖି କାହାରି ସହିତ ମିଶିବାକୁ ଛାଡ଼ନ୍ତି ନାହିଁ । ଏଥିଯୋଗୁଁ ଆମ୍ଭଦେଶର ଲୋକମାନେ ତୁମ୍ଭମାନଙ୍କ ପୁରୁଷମାନଙ୍କୁ ସମ୍ମାନ କରନ୍ତିନାହିଁ ଓ ସେମାନଙ୍କ ସଙ୍ଗେ ଅଭଦ୍ର ବ୍ୟବହାର କରନ୍ତି ।'' ମୁଁ ଉତ୍ତର କଲି, ''ଏ ସମ୍ବନ୍ଧରେ ତୁମ୍ଭମତ ସଙ୍ଗେ ମୋ ମତ ମିଳିବ ନାହିଁ । ଅତଏବ ଏ ବିଷୟରେ ଆଉ ତର୍କ କରିବା ଉଚିତ ବୋଧ ହେଉ ନାହିଁ ।'' ଏହା କହି ଆମ୍ଭେମାନେ ଅନ୍ୟ ଦିଗକୁ ଗଳ୍ପର ଗତି ଫେରାଇ ଅନ୍ୟ ବିଷୟ ପକାଇଲୁଁ ।

ଆମ୍ଭମାନଙ୍କ ସଙ୍ଗିନୀ ଫାଇଜି ବିବି ଗଳ୍ପ କରିବା ବିଷୟରେ ବିଶେଷ ପଟୁ । ତାଙ୍କର କଳ୍ପନାର ମାତ୍ରା ଅଧିକ, ସେଥିଯୋଗୁଁ ସେ କଥା କହିବାବେଳେ ଆମ୍ଭମାନେ କାହାଣୀ ଶୁଣିଲାପରି ମନ୍ତ୍ରମୁଗ୍ଧ ହୋଇ ନିବିଷ୍ଟ ଚିତ୍ତରେ ଶୁଣୁ । ଫାଇଜି ବିବିଙ୍କ ପ୍ରସାଦରୁ ଆମ୍ଭମାନଙ୍କର ଆଳସ୍ୟପୂର୍ଣ୍ଣ ଦୀର୍ଘ ଜଳଯାତ୍ରାର ଦିନଗୁଡ଼ିକ ବେଶ ସ୍ଫୁର୍ତ୍ତିରେ କଟିଗଲା ।

ଜାହାଜରେ ଗୋଟିଏ ବୈଠକ୍‌ଖାନା ଅଛି । ସେ କୋଠରିରେ ବାଦ୍ୟଯନ୍ତ୍ର ଲେଖିବାର ମେଜ, କାଗଜ,କଲମ, କାଳି, ଚଉକି ଗଦିଦିଆ କାଉଚ ଅଛି । ସେଠାରେ ଯାତ୍ରୀମାନେ ବସି ଗଳ୍ପ ଓ ଆମୋଦ କରନ୍ତି । ଯାହାଙ୍କର ପଢ଼ିବାକୁ ମନ ହୁଏ, ତାଙ୍କ ପାଇଁ ଯୋଡ଼ିଏ କାଚ ଆଲମାରିରେ ଗଳ୍ପ ପୁସ୍ତକ ପୂର୍ଣ୍ଣ ହୋଇ ରହିଅଛି ।

ଆମ ଜାହାଜରେ କେତେଜଣ ଭାରତୀୟ ପୁରୁଷ ଯାତ୍ରୀ ଥିଲେ । ସେମାନେ ଦ୍ୱିତୀୟ ଶ୍ରେଣୀରେ ଥିଲେ । ଏମାନଙ୍କ ମଧ୍ୟରୁ ଦୁଇ ଜଣ ସରକାରୀ ବୃତ୍ତିପାଇ କୃଷିବିଦ୍ୟା ଶିଖିବା ନିମନ୍ତେ ବିଲାତ ଯାଉଥିଲେ । ପ୍ରଥମ ଶ୍ରେଣୀପାଇଁ ଦ୍ୱିତୀୟ ଶ୍ରେଣୀର ଭଡ଼ା ଅପେକ୍ଷା ବେଶି ଭଡ଼ା ଦେବାକୁ ପଡ଼େ । ଦ୍ୱିତୀୟ ଶ୍ରେଣୀର କୋଠରି ଗୁଡ଼ିକ ପ୍ରଥମ ଶ୍ରେଣୀର କୋଠରି ପରି, କିନ୍ତୁ ପ୍ରଥମ ଶ୍ରେଣୀର କୋଠରି ଗୁଡ଼ିକ ଜାହାଜ ମଝିରେ ଓ ଦ୍ୱିତୀୟ ଶ୍ରେଣୀର କୋଠରୀ ଗୁଡ଼ିକ ଜାହାଜର ଏକ ପ୍ରାନ୍ତରେ ଥାଏ, ସେଥିପାଇଁ ଜାହାଜ ଦୋହଲିଲାବେଳେ ଦ୍ୱିତୀୟ ଶ୍ରେଣୀ ବେଶି ଆନ୍ଦୋଳିତ ହୁଏ ଓ ଏଥିଯୋଗୁଁ ଦ୍ୱିତୀୟ ଶ୍ରେଣୀର ଯାତ୍ରୀମାନେ ସାମୁଦ୍ରିକ ଅସ୍ଥିରତା ଯୋଗୁଁ ବେଶି କଷ୍ଟ ପାନ୍ତି । ଏମାନଙ୍କୁ ଚାରିଥର ଖାଇବାକୁ ମିଳେ । ପ୍ରଥମ ଶ୍ରେଣୀର ଯାତ୍ରିମାନଙ୍କୁ ସାତଥର ଖାଇବାକୁ ଦିଆଯାଏ । ପ୍ରଥମ ଶ୍ରେଣୀର ଯାତ୍ରୀମାନେ ଦ୍ୱିତୀୟଶ୍ରେଣୀକୁ ଯାଇ ପାରନ୍ତି, କିନ୍ତୁ ଦ୍ୱିତୀୟ ଶ୍ରେଣୀର ଯାାତ୍ରୀମାନେ ପ୍ରଥମ ଶ୍ରେଣୀକୁ ଯାଇ ପାରନ୍ତି ନାହିଁ । ପ୍ରଥମ ଶ୍ରେଣୀ ଛମହଲା ଦ୍ୱିତୀୟ ଶ୍ରେଣୀ ଚାରିମହଲା । ଏ ଶ୍ରେଣୀର ସର୍ବୋଚ୍ଚ ଛାଡ଼ ଖୁବ ପ୍ରଶସ୍ତ ଓ ଦୀର୍ଘ । ଯାତ୍ରୀମାନେ ଏହି ଛାତ ଉପରେ କ୍ରିକେଟ୍ ଟେନିସ୍ ଓ ବାଡ଼ମିଂଟନ ଇତ୍ୟାଦି ଖେଳ ଖେଳନ୍ତି । ଏହି ଛାତ ଉପରେ ଥିଏଟର ଯାତ୍ରା ହୁଏ । ଆମ୍ଭେମାନେ ଦେଖିଲୁ ଯେ ଜଣେ ମଧ୍ୟସ୍ଥ ପରିଚିତ ବ୍ୟକ୍ତି ପରିଚୟ କରାଇ ନଦେଲେ ଜଣେ ଅପରିଚିତ ଯାତ୍ରୀଙ୍କ ସହିତ ଆଳାପ କରନ୍ତି ନାହିଁ । ଆମ୍ଭେମାନେ ସାଧାରଣତଃ ଦେଖୁଁଯେ ଆମ୍ଭମାନଙ୍କ ମଧ୍ୟରେ ଜଣେ ଅପରିଚିତ ବ୍ୟକ୍ତିଙ୍କ ସଙ୍ଗେ ଆଉ ଜଣେ ଅପରିଚିତ ବ୍ୟକ୍ତିଙ୍କର ଦେଖା ହେଲେ ଅଳ୍ପ ସମୟ ମଧ୍ୟରେ ସେମାନଙ୍କ ମଧ୍ୟରେ ଆଳାପ ପରିଚୟ ହୋଇଯାଏ । କିନ୍ତୁ ଜାହାଜର ପ୍ରଥମ ଶ୍ରେଣୀ ଯାତ୍ରୀମାନଙ୍କ ମଧ୍ୟରେ ଦେଖିଲି ଯେ ଦୁଇଜଣ ଅପରିଚିତ ବ୍ୟକ୍ତି ଏକ କୋଠରିରେ ଅଛନ୍ତି, ଏକ ଟେବୁଲ ପାଖରେ ବସି ଖାନା ଖାଉଅଛନ୍ତି । ଏହିପରି ପନ୍ଦର ଦିନ ଗଲା, ଅଥଚ ଜଣେ ମଧ୍ୟସ୍ଥ ବ୍ୟକ୍ତି ଉଭୟଙ୍କୁ ମିଳାଇ ନଦେବାରୁ ସେମାନଙ୍କ ମଧ୍ୟରେ ଆଦୌ ଆଳାପ ପରିଚୟ ହେଲା ନାହିଁ । ଜାହାଜର ଦ୍ୱିତୀୟଶ୍ରେଣୀରେ ପାଦ୍ରୀ ଓ ସାଧାରଣ ଯାତ୍ରୀମାନେ ଯାନ୍ତି । ସେମାନଙ୍କ ମଧ୍ୟରେ ଏତେ ଆଦବକାଏଦା ନାହିଁ । ସେମାନେ ପରସ୍ପର ମଧ୍ୟରେ ନିଜେ ନିଜେ ଆଳାପ ପରିଚୟ କରି ନିଅନ୍ତି ।

ପୂର୍ବେ ଶୁଣିଥିଲି, ଇଂରାଜମାନେ ଆମ୍ଭମାନଙ୍କ ଅପେକ୍ଷା ଅଧିକ ଖାନ୍ତି । ଜାହାଜରେ ପନ୍ଦର ଦିନ ରହି ଏ ବିଷୟ ସ୍ୱଚକ୍ଷୁରେ ଦେଖିଲି । ସକାଳ ୬ଟା ବେଳେ ଯାତ୍ରୀମାନେ ବିଛଣାରୁ ନ ଉଠୁଣୁ ଚାକର ଚାକରାଣୀମାନେ କୋଠରିରେ ଆଣି ଚା, ରୁଟି, ମଖନ, ବିସ୍କୁଟ ଓ କେତେକ

ଫଳ ଦେଇଯାନ୍ତି । ଯାତ୍ରୀମାନେ ସେଗୁଡ଼ିକ ଉଦରସ୍ଥ କରନ୍ତି । ତଦ୍‌ପରେ ସକାଳ ୯ଟା ବେଳେ ପ୍ରାତଃ ଭୋଜନର (Breakfast) ଘଂଟା ବାଜେ, ଘଂଟା ଶୁଣି ସମସ୍ତେ ଭୋଜନାଗାରକୁ ଯାନ୍ତି । ସେଠାରେ ମେଜ ଉପରେ ନାନା ପ୍ରକାର ଫଳ, ମାଛ, ମାଂସ, ଡିମ୍ବ ଓ ଶାକସବଜୀରେ ପ୍ରସ୍ତୁତ ଦଶ ବାର ପ୍ରକାର ତରକାରୀ, ଭାତ, ଲେମନେଡ଼ ବରଫ, ସୋଡ଼ା, କଫି ମଦ ଏହିପରି ନାନାବିଧ ଖାଦ୍ୟ ଓ ପାନୀୟ ସଜ୍ଜିତ ହୋଇଥାଏ । ଯାହାର ଯାହା ଇଚ୍ଛା ହୁଏ, ସେ ତାହା ଖାନ୍ତି ପୁଣି ଦିନ ସାଢ଼େ ୧୧ଟା ବେଳେ ଯାହାଙ୍କର ଇଚ୍ଛା ହୁଏ, ତାଙ୍କୁ ଚାକର ଚାକରାଣୀମାନେ ଗୋମାଂସର ସୁରୁଆ ଓ ବିସ୍କୁଟ ଆଣି ଦେଇଯାନ୍ତି । ଯେଉଁମାନେ ଏହା ନ ଖାନ୍ତି, ସେମାନଙ୍କୁ ଦୁଧ ଓ କିଛି ଫଳ ଖାଇବାକୁ ମିଳେ । ଦିନ ଗୋଟାଏ ବାଜିଲାବେଳେ ସମସ୍ତେ ଜଳଯୋଗ (Luncheon) କରିବାକୁ ଭୋଜନାଗାରକୁ ଯାନ୍ତି । ସକାଳ ୯ଟା ବେଳେ ଯେପରି ଖାଦ୍ୟ, ଏ ସମୟରେ ମଧ୍ୟ ସେହିପରି ନାନା ପ୍ରକାର ଖାଦ୍ୟ ମେଜ ଉପରେ ଥାଏ । ଚାରି ବାଜିଲା ବେଳକୁ ଅପରାହ୍ନର ଚା ପାନ (Afternoon tea) । ସେ ସମୟରେ ଚା, କଫି, ରୁଟି, ମଖନ, ମହନଭୋଗ ଓ ପିଠା ପ୍ରଭୃତି ଯେ ଯାହାର ରୁଚିମତେ ଖାନ୍ତି । ସନ୍ଧ୍ୟା ୭ଟା ବେଳେ ମାଛ ମାଂସ ରେ ତିଆରି ନାନା ପ୍ରକାର ଖାଦ୍ୟ ମିଳେ । ରାତି ସାଢ଼େ ନଅ ଘଂଟା ବେଳକୁ ରାତ୍ର ଭୋଜନ (Supper) ହୁଏ । ସେତେବେଳେ ରୁଟି, ମଖନ ଓ ମାଂସ ମିଶ୍ରିତ ପିଠା (Sandwich) ଖାଇବାକୁ ମିଳେ । ଯାହାଙ୍କର ଯାହା ଇଚ୍ଛା, ସେ ଦିନଯାକ ଏହିପରି ଖାଉଥାନ୍ତି । ଇଂରେଜ ମାନଙ୍କ ପ୍ରତି କ୍ଷୁଧାଦେବୀ ଭାରି ପ୍ରସନ୍ନା । ଯେ ସେମାନଙ୍କ ଭୋଜନର ମାତ୍ରା ଦେଖି ନାହାନ୍ତି, ତାଙ୍କୁ ଏ ଖାଦ୍ୟର ପରିମାଣ ବୁଝାଇବା ଅସମ୍ଭବ । ପ୍ରତି ଜାହାଜରେ ଯାତ୍ରୀମାନଙ୍କପାଇଁ ଦୁଇ ମାସର ଉପଯୋଗୀ ଖାଦ୍ୟ ସାମଗ୍ରୀ ଗଚ୍ଛିତ ଥାଏ । ଜାହାଜର ଭଣ୍ଡାରକୁ ଦେଖିଲେ ଗୋଟିଏ କ୍ଷୁଦ୍ର ସହର ପରି ଜଣାଯାଏ । ଜାହାଜର ତଳ ମହଲାରେ ଗୋଟିଏ ବଡ଼ କୋଠରୀ ଅଛି । ସେ ଘର ଛାତଠାରୁ ତଳ ପର୍ଯ୍ୟନ୍ତ ବନ୍ଧାକୋବି, ଫୁଲକୋବି, ଆଳୁ ପିଆଜ, ମଟର, ସିମ୍ବ, ବାଇଗଣ, ଶାଗ ପ୍ରଭୃତି ପରିବାପତ୍ରରେ ପରିପୂର୍ଣ୍ଣ । ପ୍ରତିଦିନ ୮୦୦/୯୦୦ ଯାତ୍ରୀଙ୍କୁ ଖାଇବାକୁ ଦେବାକୁ ଦୁଇମାସ ପାଇଁ କେତେ ପରିବାପତ୍ର ସଂଚିତ ହୋଇଥାଏ ତାହା ପାଠକମାନେ ଅନୁମାନଦ୍ୱାରା ବୁଝି ପାରିବେ । ଆହୁରି ଆଶ୍ଚର୍ଯ୍ୟର ବିଷୟର ଯେ ଏ ଫଳମୂଳଗୁଡ଼ିକ ଏତେଦିନ ଯାଏ ଅବିକୃତ ଭାବରେ ଥାଏ । ଜାହାଜର ଗୋଟିଏ କୋଠରିରେ ବରଫ ଥାଏ । ପରିବାଘରଟି ବରଫଘରକୁ ଲାଗିଅଛି । ସେଥିପାଇଁ ପରିବାଘରଟି ମଧ୍ୟ ଥଣ୍ଡା ଥାଏ ଓ ସେଥିଯୋଗୁଁ ପରିବାପତ୍ରଯାକ ପଚି ସଢ଼ି ନ ଯାଇ ବରାବର ସତେଜ ଥାଏ । ଯାତ୍ରୀମାନଙ୍କୁ ଜାହାଜରେ ଦୁଧ ଯୋଗାଇବାପାଇଁ ଗୋରୁ ନାହାନ୍ତି । ଥରେ ଭାବି ଦେଖନ୍ତୁ ଯେ ଏତେ ଲୋକଙ୍କୁ ଦୁଧ ଯୋଗାଇବାପାଇଁ ଗୋଠେ ଗାଈ ଆବଶ୍ୟକ । ଏତେ ଗାଈ ଓ ଏମାନଙ୍କର ଦୁଇମାସର ଉପଯୋଗୀ ଖାଦ୍ୟପାଇଁ କେତେ ସ୍ଥାନ ଆବଶ୍ୟକ ହୁଅନ୍ତା । କିନ୍ତୁ ଇଂରେଜମାନେ ବନ୍ଧିବଳରେ ଜାହାଜରେ ଗୋରୁ ରଖିବା ଅସୁବିଧାରୁ ତ୍ରାହି ପାଇଅଛନ୍ତି ।

ଜାହାଜ ବିଲାତରୁ ବାହାରିଲାବେଳେ ଦୁଧ ଦୁହିଁ ବଡ଼ ବଡ଼ ଟିଣରେ ଭର୍ତ୍ତି କରି ସେ ଟିଣଗୁଡ଼ିକୁ ବରଫ ମଧ୍ୟରେ ରଖିଦିଅନ୍ତି । ବରଫ ଭିତରେ ରହିବାରୁ ଏ ଦୁଧ ଦୁଇମାସ କାଳ ଅବିକୃତ ଅବସ୍ଥାରେ ଥାଏ । ଯେଉଁ ଦୁଧକୁ ଓଳିଏ ନ ଆଉଟି ରଖି ଦେଲେ ଆର ଓଳିକୁ ଖଟା ହୋଇଯାଏ, ସେହି ଦୁଧକୁ ଇଂରେଜମାନେ ବୁଦ୍ଧିବଳରେ ଦୁଇମାସ କାଳ ଅବିକୃତ ରଖିପାରନ୍ତି ।

ଆମ୍ଭମାନଙ୍କ ଦେଶରେ ଆମ୍ଭେମାନେ ଯେଉଁ ଲୁଗା ପିନ୍ଧିଥାଉ, ସେହି ଲୁଗା ପିନ୍ଧି କେଶବିନ୍ୟାସ ଆଡ଼କୁ ଦୃଷ୍ଟି ନରଖି ଖାଇବାକୁ ଯାଉ । କିନ୍ତୁ ଇଂରେଜମାନେ ତାହା କଦାପି କରିବେ ନାହିଁ । ସେମାନେ ସ୍ୱଦେଶରେ ବିଦେଶରେ, ଜାହାଜରେ ଯେତେବେଳେ ଯେଉଁଠାରେ ଥାନ୍ତୁ, ଆହାର ସମୟରେ ବେଶପରିବର୍ତ୍ତନ ଆବଶ୍ୟକ । ଯେତେବେଳେ ଅପରାହ୍ନ ସାଢ଼େ ଛଅ ଘଣ୍ଟା ସମୟରେ ବସ୍ତ୍ର ପରିବର୍ତ୍ତନର ଘଣ୍ଟା ବାଜେ, ସେ ସମୟରେ, ଇଂରେଜମାନେ ନିଜ ନିଜ କୋଠରିକୁ ଯାଇ କେଶବିନ୍ୟାସକରି ଖାଇବା ଘରକୁ ଯାନ୍ତି । ଜାହାଜରେ ସ୍ନାନର ବ୍ୟବସ୍ଥା ବେଶ ସୁନ୍ଦର । ବେଶି ଯାତ୍ରୀ ଥିବା ଜାହାଜରେ କେହି ଯାତ୍ରୀ ଗାଧୋଇବାପାଇଁ ୧୦ ମିନିଟରୁ ବେଶି ସମୟ ପାନ୍ତି ନାହିଁ। ସ୍ତ୍ରୀମାନଙ୍କ ପାଇଁ ଓ ପୁରୁଷମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ନାନାଗାର ଅଛି । ସ୍ନାନାଗାରରେ ଥଣ୍ଡା ଲୁଣପାଣି ଓ ଗରମ ଲୁଣପାଣିର ଦିଓଟି କୁଣ୍ଡ ଥାଏ ଓ କୁଣ୍ଡେ ମିଠା ପାଣି ଥାଏ । ଯେଉଁ ପାଣିରେ ଗାଧୋଇବାକୁ ଇଚ୍ଛା ହେବ, ସେ ପାଣିରେ ମନ ବୋଧକରି ଗାଧୋଇ ପାରିବ ! ସକାଳୁ ନଅଟା ପର୍ଯ୍ୟନ୍ତ ସ୍ନାନର ସମୟ ।

ଜାହାଜରେ ଧୋବାର ବନ୍ଦୋବସ୍ତ ଅଛି । ଜାହାଜରେ ଯାତ୍ରୀମାନଙ୍କପାଇଁ ଯେଉଁ ଖଟ ଥାଏ, ସେ ଖଟର ବିଛଣା ଚାଦର, ଖାଇବା ମେଜ ଉପରର ଚାଦର, ଝାଡ଼ଣ, ତଉଲିଆ ଇତ୍ୟାଦି ଜାହାଜର ସମ୍ପତ୍ତି । ପ୍ରତିଦିନ ଏଥିରୁ ହଜାରେ ଖଣ୍ଡେ ଜାହାଜର ଧୋବା କାଚେ । ଏହା ଛଡ଼ା ଯେବେ କେହି ଯାତ୍ରୀ ସେ ଧୋବାକୁ ଲୁଗା କାଚିବାକୁ ଦିଅନ୍ତି, ତାହାହେଲେ ଲୁଗା ଖଣ୍ଡିକ କାଚିବାପାଇଁ ଆଠଅଣା ଲେଖାଏଁ ଦେବାକୁ ପଡ଼େ । ଦିନକ ମଧ୍ୟରେ ଲୁଗା କାଚିଦିଏ ।

ଜାହାଜରେ କେହି ମରିଗଲେ ପାଶ୍ଚାତ୍ୟ ପ୍ରଣାଳିରେ ସେ ମୃତଦେହର ସତ୍କାରର ବ୍ୟବସ୍ଥା ମଧ୍ୟ ଅଛି । ଆମ୍ଭମାନଙ୍କର ପୂର୍ବତନ କମିଶନର ଗ୍ରାଉସ୍ ସାହେବ ଓ କଲେକ୍ଟର ହେରେଲ୍ଡ୍ ସାହେବ ବିଲାତ ଯିବା ସମୟରେ ବାଟରେ ଜାହାଜରେ ମୃତ ହୋଇଥିଲେ । ସେମାନେ ସତ୍କାର ଜାହାଜରେ ହୋଇଥିଲା । ଜାହାଜରେ ବଢ଼େଇ ଅଛି । ମୃତଦେହ ରଖିବାପାଇଁ ସେ ବଢ଼େଇ କାଠର ସିନ୍ଧୁକ (Coffien) ତିଆରି କରିଦିଏ । ସେଥିରେ ଶବଟି ରଖା ଗଲାରୁ ଧର୍ମଯାଜକ (ପାଦ୍ରୀ) କିମ୍ବା ଯେଉଁ ଜାହାଜରେ ପାଦ୍ରୀ ନ ଥାନ୍ତି ସେ ଜାହାଜର କପ୍ତାନ ସାହେବ ମୃତ ବ୍ୟକ୍ତିଙ୍କ ଆତ୍ମାର ସଦଗତି ନିମନ୍ତେ ଉପାସନା କରନ୍ତି । ଏହାପରେ ସେ ସିନ୍ଧୁକକୁ ଯିବାପାଇଁ ତାହା ଭିତରେ ଗୋଟିଏ ନିଦା ଲୁହା ଗୋଳା ରଖି ସିନ୍ଧୁକଟି ବନ୍ଦକରି ଦିଅନ୍ତି ଓ ସିନ୍ଧୁକଟିକୁ ଦଉଡ଼ିରେ ବାନ୍ଧି ଧୀରେ ଧୀରେ ଜାହାଜ ଉପରୁ ଓହ୍ଲାଇ ସମୁଦ୍ର ମଧ୍ୟକୁ ଛାଡ଼ି ଦିଅନ୍ତି ।

ରବିବାର ଦିନ ଖ୍ରୀଷ୍ଟିୟାନ୍‌ମାନଙ୍କ ପାଇଁ ଉପାସନା କରିବାର ବ୍ୟବସ୍ଥା ଅଛି । ଭୋଜନ ବାରରେ ଉପାସନା ହୁଏ । ଦିନ ସାଢ଼େ ଏଗାରଟା ବେଳେ ଉପାସନା କରିବାପାଇଁ ଘଣ୍ଟା ବାଜେ । ଯାତ୍ରୀମାନେ ଉପାସନା କରିବାପାଇଁ ସେଠାକୁ ଆସନ୍ତି; ଏ ଉପାସନାରେ ଦ୍ୱିତୀୟ ଶ୍ରେଣୀର ଯାତ୍ରିମାନେ ମଧ ଯୋଗ ଦେଇ ପାରନ୍ତି । ଜାହାଜର ପାଦ୍ରୀ ଉପାସନା କାର୍ଯ୍ୟ ନିର୍ବାହ କରନ୍ତି । ଯଦିଚ ଇଂରେଜମାନଙ୍କ ମଧ୍ୟରେ ସମସ୍ତେ ଖ୍ରୀଷ୍ଟିୟାନ, ତଥାପି ଅଧିକାଂଶ ଯାତ୍ରୀ ଉପାସନା ବେଳେ ସେଠାରେ ଉପସ୍ଥିତ ହୁଅନ୍ତି ନାହିଁ, ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ ।

ଇଂରେଜ ଜାତି ଅତ୍ୟନ୍ତ ଆମୋଦପ୍ରିୟ । ସେମାନେ ଆମୋଦନ ନ କରି ରହିପାରନ୍ତି ନାହିଁ । ପନ୍ଦର ଦିନର ଜଳଯାତ୍ରା ସେମାନଙ୍କ ପକ୍ଷରେ ଆଳସ୍ୟପୂର୍ଣ୍ଣ ବୋଧହୁଏ । ସେଥିପାଇଁ ଜାହାଜରେ ନାନା ପ୍ରକାର ଆମୋଦର ଆୟୋଜନ ଅଛି । ବାଜି ରଖିବା ଓ ଜୁଆ ଖେଳିବା ସେମାନଙ୍କର ଗୋଟିଏ ପ୍ରଧାନ ଆମୋଦ । ଏହାଛଡ଼ା ଗୀତ, ବାଦ୍ୟ, ନାଟ, ଥିଏଟର ଇତ୍ୟାଦିରେ ସେମାନେ ସମୁଦ୍ରଯାତ୍ରାର ଦିବସଗୁଡ଼ିକ ଅତିବାହିତ କରନ୍ତି ।

ଏହି ଜାହାଜରେ ଭାରତୀୟ ଅନେକ ନାବିକ ଓ କର୍ମଚାରୀ ଅଛନ୍ତି । ରବିବାର ଦିନ କପ୍ତାନ୍ ସାହେବ ଜାହାଜର ସମସ୍ତ ନାବିକ ଓ କର୍ମଚାରୀମାନଙ୍କୁ ଥରେ ଦେଖନ୍ତି । ନାବିକମାନେ ଶୁଭ୍ର ପାଇଜାମା ଓ କୁର୍ତ୍ତାପିନ୍ଧି ମୁଣ୍ଡରେ ଲାଲ ରୁମାଲ ବାନ୍ଧି ଏକ ପାର୍ଶ୍ୱରେ ଶ୍ରେଣୀବଦ୍ଧ ହୋଇ ଦଣ୍ଡାୟମାନ ହୁଅନ୍ତି, ଅନ୍ୟପାର୍ଶ୍ୱରେ କର୍ମଚାରୀ ମାନେ ଶୁଭ୍ର ପାଇଜାମା ଓ ଚପକନପିନ୍ଧି ମୁଣ୍ଡରେ ଲାଲପାଟ ବାନ୍ଧି ଶ୍ରେଣୀବଦ୍ଧ ହୋଇ ଠିଆ ହୁଅନ୍ତି । ଏମାନଙ୍କ ସଂଖ୍ୟା ପ୍ରାୟ ଦୁଇଶତ । ଜଣେ ଉଚ୍ଚପଦସ୍ଥ କର୍ମଚାରୀ ବଂଶୀ (Bugle) ବଜାନ୍ତି, କପ୍ତାନ୍ ସାହେବ ଉପାସନା ପରେ ଆଗମନ କରନ୍ତି; ନାବିକ ଓ କର୍ମଚାରୀମାନେ କପ୍ତାନଙ୍କୁ ଅଭିବାଦନ କରି ଶ୍ରେଣୀବଦ୍ଧ ହୋଇ ସ୍ୱ ସ୍ୱ କର୍ମସ୍ଥାନକୁ ଚାଲିଯାନ୍ତି ।

ଏହିରୂପେ ତିନିଦିନ ଆମ୍ଭେମାନେ ଲୋହିତ ସାଗରରେ ଥାଇ ଚତୁର୍ଥଦିନ ମଧ୍ୟାହ୍ନ ବାରଟା ସମୟରେ (୧୦ ତାରିଖ ସେପ୍ଟେମ୍ବର) ସୁୟେଜ ଖାଲରେ ପ୍ରବେଶ କଲୁ । ଜାହାଜ ଏହିଠାରେ ସ୍ଥଗିତ ହେଲା । ଆମ୍ଭେମାନେ ସୁଏଜଖାଲର ପ୍ରବେଶ ମୁଖରେ ଉପସ୍ଥିତ ହେବାମାତ୍ରକେ ଫରାସୀ ଦେଶର ଜଣେ ଡାକ୍ତର ଓ ଜଣେ ଡାକ୍ତରାଣୀ ଯାତ୍ରୀମାନଙ୍କୁ ପରୀକ୍ଷା କରିବାପାଇଁ ଜାହାଜକୁ ଆସିଲେ । ଆମ୍ଭେମାନେ (ପ୍ରଥମ ଶ୍ରେଣୀର ସମସ୍ତ ଯାତ୍ରୀ) ଖାଇବା ଘରେ ଆସି ବସିଲୁଁ । ଜାହାଜର ପ୍ରଧାନ କର୍ମଚାରୀ ପ୍ରତ୍ୟେକଙ୍କ ନାମ ଧରି ଡାକିଲେ । ପ୍ରତ୍ୟେକ ଯାତ୍ରୀ ଡାକ୍ତରଙ୍କ ସମ୍ମୁଖଦେଇ ଡେକ୍ ଉପରକୁ ଚାଲିଗଲେ । ଡାକ୍ତର ଡାକ୍ତରାଣୀ ବୁଝିପାରିଲେ ଯେ ଏମାନଙ୍କ ମଧ୍ୟରେ କାହାରି କିଛି ରୋଗ ନାହିଁ, ସୁତରାଂ ସନ୍ତୁଷ୍ଟ ମନରେ ଚାଲିଗଲେ । ଆମ୍ଭମାନଙ୍କ ଜାହାଜ ଖାଲ ମୁଖରେ ପ୍ରବେଶ କଲା । ଦୂରରୁ ଏହା ଏଡ଼େ ସଙ୍କୀର୍ଣ୍ଣ ମନେ ହେଉଥିଲା ଯେ ଭାବୁଥିଲି ଏହା ମଧ୍ୟରେ ଜାହାଜ କିପରି ଯିବ ? ଖାଲମଧଦେଇ ଜାହାଜ ସମସ୍ତ ରାତ୍ରି ଧୀର ଗତିରେ ଚାଲିଲା, ଦୁଇ ପାର୍ଶ୍ୱରେ ତରୁହୀନ ବାଲୁକା ପ୍ରାନ୍ତର, କେବଳ

ସ୍ଥାନେ ସ୍ଥାନେ ଯତ୍ନବର୍ଦ୍ଧିତ ସାନ ସାନ ଗଛଗୁଡ଼ିକ ଆରାମପ୍ରଦ ବୋଧ ହେଉଥିଲା । ଅନେକ ରାତ୍ରରେ ଅର୍ଦ୍ଧଚନ୍ଦ୍ର ଉଦିତ ହେଲା, ଆମ୍ଭେମାନେ କ୍ଷୀଣ ଚନ୍ଦ୍ରାଲୋକରେ ଦେଖିଲୁଁ, ଦୁଇ ତୀରରେ କେବଳ ବାଲୁକାରାଶି । ମଝିରେ ମଝିରେ କ୍ୟାବିନ ଖିଡ଼ିକି ଫିଟାଇ ସେହି ଅନନ୍ତ ବାଲୁକାରାଶି ଦେଖୁଥିଲୁ । କାରଣ ଅନେକ ଦିବସ ଜଳରାଶି ମଧ୍ୟରେ ଥାଇଁ ବିରକ୍ତ ବୋଧ ହୋଇଥିଲା । ଭୋର ପାଞ୍ଚଟା ସମୟରେ ସେଇବନ୍ଦରରେ (Port Seyd) ଜାହାଜ ନଙ୍ଗର କଲା । ଏହି ବନ୍ଦରଟି ଅତି ସୁନ୍ଦର, ସକାଳେ ଆହାର କରି ଗୋଟିଏ ବୋଟରେ ବସି ସେଲ ସାହେବ ଓ ତାଙ୍କର ପତ୍ନୀ, ପିଉସାହେବ ଓ ତାଙ୍କର ପତ୍ନୀ, ସରଳା ଓ ମୁଁ ବନ୍ଦର ଦେଖିବାକୁ ଗଲୁ ।

ବନ୍ଦରରେ ନାନା ଦେଶର ଲୋକ ଦୋକାନ କରି ବସବାସ କରୁଅଛନ୍ତି । ଗ୍ରୀକ୍, ଫରାସୀ, ସୋମାଲୀ (ଏଡ଼େନ୍‌ବାସୀ), ମିଶରୀ, ଇଂରେଜ, ତୁର୍କୀ ପ୍ରଭୃତି କେତେ ଜାତିର କେତେ କେତେ ଲୋକ ଅଛନ୍ତି ଜଣାନାହିଁ । ଆମ୍ଭେମାନେ ଦୋକାନମାନ ଦେଖି, ନାନା ପ୍ରକାର ଫଳ କିଣି, ଚାରିଆଡ଼େ ବୁଲି କ୍ଳାନ୍ତ ହୋଇ ଜାହାଜକୁ ଫେରିଆସିଲୁ । ଏଗାରଦିନ ପରେ ମାଟି ଉପରେ ଚାଲିବା କି ଆନନ୍ଦଜନକ ଜଳଯାତ୍ରୀମାନେ ସହଜରେ ବୁଝିପାରିବେ ।

ମୋର ଶରୀର ବଡ଼ ଦୁର୍ବଳ ଥିଲା; ହଠାତ ଥଣ୍ଡା ଲାଗିବାରୁ ପିଠିରେ ଅତ୍ୟନ୍ତ ବ୍ୟଥା ଅନୁଭବ କରି ଶଯ୍ୟାଶାୟୀ ହେଲି । ପାର୍ଶ୍ୱ ପରିବର୍ତ୍ତନ କରିବାକୁ କଷ୍ଟ ବୋଧ ହେଲା । ମୋର ଦୁଇ ସଙ୍ଗିନୀ କଷ୍ଟ ଦେଖି ମନେକଲେ, ମୁଁ ମରିଯିବି, ଫାଇଜି ବିବି ଡାକ୍ତରଙ୍କୁ ଖବର ଦେବାକୁ ଦୌଡ଼ିଗଲେ । ସେ ଯାଇଁ ଡାକ୍ତରଙ୍କୁ କହିଲେ, "Miss Das is dying" ଅର୍ଥାତ୍ ମିସ୍ ଦାସ ମରୁଅଛନ୍ତି । ଡାକ୍ତର ଖାଇବା ଛାଡ଼ି ମୋ କ୍ୟାବିନକୁ ଦୌଡ଼ି ଆସିଲେ । ଆସି ଦେଖିଲେ, ମୋର ସମୁଦ୍ରପ୍ରାପ୍ତି ହେବାର କୌଣସି ଆଶଙ୍କା ନାହିଁ । ଡାକ୍ତର କହିଲେ, "ବ୍ୟଥା ଅତ୍ୟନ୍ତ ଖରାପ , ତାହା ପାଇଁ କଷ୍ଟ ପାଇବାକୁ ହେବ ।" (ଡାକ୍ତରଙ୍କୁ ଭିଜିଟ ଦେବାକୁ ହୁଏ ନାହିଁ, ଜାହାଜ ଭଡ଼ାରୁ ସେ ଭିଜିଟ ପାନ୍ତି । ମୁଁ କେତେଦିନ ସେ ଯନ୍ତ୍ରଣାରେ ଶଯ୍ୟାଶାୟୀ ଯେଉଁମାନଙ୍କ ସହିତ ଆଳାପ ହୋଇଥିଲା ସେମାନେ ପ୍ରତିଦିନ ମୋତେ ଦେଖିବାକୁ ଆସି ସହାନୁଭୂତି ପ୍ରକାଶ କରିଥିଲେ । ସେଇଦିନ ବନ୍ଦରରେ ଜାହାଜ କିଛିକ୍ଷଣ ରହି ବନ୍ଦର ଛାଡ଼ିଲା । ସେପ୍ଟେମ୍ବର ୧୨ ତାରିଖରେ ଭୂମଧ୍ୟ ସାଗରରେ ଇୟୁରୋପର ଅଧିକାରରେ ଆସି ପହଞ୍ଚିଲୁ' । ବାୟୁ ଶୀତଳ ହୋଇ ଆସିଲା, ଶୀତ ବସ୍ତ୍ର ନ ପିନ୍ଧି ଡେକ ଉପରକୁ ଯିବା ଅସମ୍ଭବ ହୋଇ ଉଠିଲା । ସମୁଦ୍ର ଗାଢ଼ ନୀଳବର୍ଣ୍ଣ ଧାରଣ କଲା । ଯେତେବେଳେ ଆମ୍ଭେମାନେ ଇଟାଲୀର ତୀର ପ୍ରଦେଶ (Coast)ଦେଇ ଗଲୁଁ, ଦେଖିଲି, ସେଠାର ଦୃଶ୍ୟ ଅତି ସୁନ୍ଦର, ଏକ ପାର୍ଶ୍ୱରେ ସିସିଲି ଅନ୍ୟ ପାର୍ଶ୍ୱରେ ଇଟାଲୀ, ଏଠାରେ ପାହାଡ଼ ମାନ ଗୃହ, ଚାଷଭୂମି, ଦ୍ରାକ୍ଷା ଲତାରେ ପରିପୂର୍ଣ୍ଣ; ଇଟାଲୀର ନଦୀ ଉପରର ପୋଲ ମଧ୍ୟ ଦେଖା ଯାଉଥିଲା ।

ଆମ୍ଭେମାନେ ପଶ୍ଚାତରେ ଏକ ଦିଗରେ ସିସିଲି ଅନ୍ୟଦିଗରେ ଇଟାଲୀ ରଖି Strait of Messina ପାରହୋଇ ପୁଣି ସେହି ଭୂମଧ୍ୟ ସାଗରକୁ ଆସିଲୁ । ଜାହାଜ ସବୁ ଦୃଶ୍ୟ ପଶ୍ଚାତରେ

ରଖି ପଶ୍ଚିମାଭିମୁଖରେ ଚାଲିଲା । ଦୂରରୁ Strambaly ଦ୍ୱୀପ (ଏଠାରେ ଆଗ୍ନେୟ ଗିରି ଅଛି) କଳା ମେଘ ପରି ଦେଖାଗଲା ତତ୍‌ପରଦିନ ୧୩ ତାରିଖ ଅପରାହ୍ନ ୩ଟା ସମୟରେ ଏହି ଦ୍ୱୀପ ନିକଟକୁ ଆସିଲୁ । ପାହାଡ଼ଟି ଅତ୍ୟନ୍ତ ଉଚ୍ଚ ପାହାଡ଼କଡ଼ରେ ବୃହତ ବଗିଚା ଅଛି କିନ୍ତୁ ପାହାଡ଼ ଉପରେ ଆଗ୍ନେୟ ଗହ୍ୱର (Creter) ଅଛି । ଏହିରୂପେ ଦୁଇ ଦିନ ଭୂମଧ୍ୟସାଗରରେ ଥାଇଁ ୧୪ ତାରିଖ ପ୍ରାତଃ କାଳରେ ମାରଶେଲରେ ଆସି ପହଞ୍ଚିଲୁ ।



# ତ୍ରୟୋଦଶ ଭାଗ

## ବିଲାତ ପ୍ରବାସ

### ଲଣ୍ଡନ

ମୁଁ ଯେତେବେଳେ ସ୍ୱଦେଶକୁ ଫେରି ଆସିଲି ମୋର ବନ୍ଧୁମାନେ ମୋତେ ପ୍ରଶ୍ନ କଲେ, ''ଲଣ୍ଡନ କିପରି''? ମାତ୍ର ମୋ ପକ୍ଷରେ ଏ କଥା ଉତ୍ତର ଦେବା କଠିନ ହେଲା । ଯେଉଁ ପକ୍ଷୀ ଗୋଟିଏ ପର୍ବତମଧ୍ୟସ୍ଥ ଗୋଟିଏ ବୃକ୍ଷର ଗୋଟିଏ କ୍ଷୁଦ୍ର ଶାଖାରେ ତାହାର କ୍ଷୁଦ୍ର ବସା ବାନ୍ଧି ବସିଥାଏ, ସେହି ପକ୍ଷୀକୁ ପର୍ବତର ଆୟତନ ବିଷୟ ପ୍ରଶ୍ନ କଲେ, ସେ ପ୍ରଶ୍ନର ଉତ୍ତର ଦେବା ତାହା ପକ୍ଷରେ ଯେପରି ଅସମ୍ଭବ ଓ କଷ୍ଟକର । ମୋ ପକ୍ଷରେ ଲଣ୍ଡନ କିପରି ଏ ପ୍ରଶ୍ନର ଉତ୍ତର ଦେବା ମଧ୍ୟ ତଦ୍ରୂପ ଅସମ୍ଭବ ଓ କଷ୍ଟକର, ଚିତ୍ରପଟରେ ସେହି ପର୍ବତକୁ ଦେଖିଲେ ତାହାର ଆକାର ଅନୁଭୂତ ହୁଏ, କିନ୍ତୁ ପର୍ବତର କୌଣସି ସ୍ଥାନରେ ଦଣ୍ଡାୟମାନ ହେଲେ ତାହାର ଆକାର ବୁଝାଯାଏ ତାହିଁ । ଲଣ୍ଡନର ବର୍ତ୍ତମାନଙ୍କର ମାନଚିତ୍ର ଅଛି, ସେଥିରୁ କିୟଦଂଶରେ ଲଣ୍ଡନରେ କେତେ ବର୍ତ୍ତ ଅଛି ତାହା ବୁଝାଯାଏ, କିନ୍ତୁ ମାନଚିତ୍ରରେ ଅଟ୍ଟାଳିକା, ମନୁଷ୍ୟସମାଗମ ଚିହ୍ନିତ ନଥିବାରୁ ତଦ୍ୱାରା ସହରର ପ୍ରକୃତ ଅବସ୍ଥା ବୁଝାଯାଏନାହିଁ । ଥରେ ଆକାଶ ପ୍ରତି ଦୃଷ୍ଟିପାତ କରି ଦେଖନ୍ତୁ, ଅନାଦି ଅତ୍ୟନ୍ତ ଆକାଶ ମେଘ ଖଣ୍ଡଦ୍ୱାରା ପରିପୂର୍ଣ୍ଣ, ସ୍ଥାନେ ସ୍ଥାନେ ମେଘ ନାହିଁ, କିନ୍ତୁ ଏଗୁଡ଼ିକ ସୂକ୍ଷ୍ମରେଖା ସ୍ୱରୂପ ଏବଂ ସେହି ମେଘଖଣ୍ଡ ମାନ କୃଷ୍ଣବର୍ଣ୍ଣ, ଶୁକ୍ଳବର୍ଣ୍ଣ ଓ ଅନ୍ୟାନ୍ୟ ବର୍ଣ୍ଣରେ ରଞ୍ଜିତ ବର୍ତ୍ତମାନ ଉକ୍ତ ସୂକ୍ଷ୍ମ ରେଖା ସମୂହକୁ ଲଣ୍ଡନର ମର୍ତ୍ତ ଏବଂ ନାନା ବର୍ଣ୍ଣରେ ରଞ୍ଜିତ ମେଘ ଖଣ୍ଡମାନଙ୍କୁ ଅଟ୍ଟାଳିକା ରୂପେ ଦେଖନ୍ତୁ ଏବଂ ଭାବନ୍ତୁ ଯେ କେବଳ ଦୃଷ୍ଟିର ସୀମା ଭିତରେ ନୁହେଁ ଦୃଷ୍ଟିର ବହି ର୍ଦେଶରେ ମଧ୍ୟ ଏହିପରି ବର୍ତ୍ମ ଓ ଅଟ୍ଟାଳିକା ଆଦିଅନ୍ତହୀନ ଆକାଶରେ ଖଞ୍ଜା ହୋଇ ରହିଛି, କେବଳ ଦେଖି ପାରୁନାହାନ୍ତି । ଲଣ୍ଡନ ସହର କଣ, ଏହି ପ୍ରକାର କଳ୍ପନାଦ୍ୱାରା ତାହା କିୟତ ପରିମାଣରେ ବୁଝି ପାରିବେ ।

ଗୋଟିଏ ପ୍ରବାଦ ବାକ୍ୟ ଅଛି, ଲଣ୍ଡନର ଆରମ୍ଭ ଓ ଶେଷ କେହି ଦେଖି ନାହିଁ; ପ୍ରବାଦଟି ପ୍ରଥମରେ ମିଥ୍ୟା ବୋଲି ବୋଧହୁଏ, କିନ୍ତୁ ପ୍ରକୃତରେ ତାହା ନୁହେଁ । କାରଣ ଲଣ୍ଡନ ସହର ପ୍ରତିଦିନ ବୃଦ୍ଧି ଲାଭ କରୁଅଛି । ତର୍ହିର ପାର୍ଶ୍ୱସ୍ଥ ସ୍ଥାନମାନଙ୍କରେ ପ୍ରତି ସପ୍ତାହର ନୂତନ ବସତି ହେଉଅଛି । ସମସ୍ତ ଦେଶର ବାଣିଜ୍ୟ ରାଜନୀତିକ ଚର୍ଚ୍ଚା, ବିଜ୍ଞାନ ଚର୍ଚ୍ଚା, ବିଦ୍ୟାଶିକ୍ଷା ଏବଂ ଉକ୍ତ ଶିକ୍ଷାର ସାହାଯ୍ୟରେ ଜୀବନର ଉପଯୋଗୀ ପଦାର୍ଥ ମାନ ଏବଂ ମନୁଷ୍ୟର ସର୍ବବିଧ ସୁଖାଭିଳାକ୍ଷ ତୃପ୍ତ କରିବାର ବସ୍ତୁମାନ ଲଣ୍ଡନରେ ଅଳ୍ପସ୍ଥାନରେ ଏକତ୍ର ହୋଇଅଛି । ମନୁଷ୍ୟର ପ୍ଳୀହାରୋଗ ହେଲେ ଯେ ପ୍ରକାର ସମସ୍ତ ଶରୀରର ରକ୍ତ ପ୍ଳୀହା ନିକଟସ୍ଥ ସ୍ଥାନମାନଙ୍କରେ

ଅଧିକ ପରିମାଣରେ ସଞ୍ଚାରିତ ସହରର ମାଟିତଳେ ଅନବରତ ରେଳ ଯିବା ଆସିବା କରୁଅଛି, କିନ୍ତୁ ଏହାର ଷ୍ଟେଶନ ସହର ଉପରେ, ତେଣୁ ସେହିସବୁ ଗାଡ଼ିର ଶତ ଶତ ଲୋକ ଷ୍ଟେସନୁ ଆସି ରାଜପଥରେ ଜନତାର ସ୍ରୋତ ସହିତ ମିଶି ଯାଉ ଅଛନ୍ତି । ଯଦି ଲଣ୍ଡନର ପଥର ପ୍ରତିଦିନର ଜନତା କଳ୍ପନା କରିବାକୁ ଚାହାନ୍ତି, ତେବେ ଆମ୍ଭମାନଙ୍କ ଦେଶର ଜାତୀୟ ଉତ୍ସବରେ ଲୋକ ସମାଗମ ସ୍ମରଣ କଲେ କିୟତ ପରିମାାଣରେ ପରିଚୟ ପାଇବେ । କିନ୍ତୁ ରାଜପଥର ବ୍ୟବସ୍ଥା କିପରି ତାହା ଲଣ୍ଡନକୁ ନ ଆସିଲେ କିଛି ବୁଝି ପାରିବେ ନାହିଁ । ମୁଁ ଦିନେ ଏହି ରାଜପଥ ଦେଖିବାକୁ ଆସିଥିଲି, ଦେଖିଲି ଅବିରାମବାହୀ ଗାଡ଼ି ଓ ଜନତା ସହିତ ଦୋକାନ ଚାଲୁଅଛି, ଘର ଚାଲୁଅଛି, ଯାହାକିଛି ସବୁ ଚାଲୁଅଛି ! ମୁଁ ଏହି ସମସ୍ତ ଦେଖି ବିସ୍ମୟସହକାରେ ଭାବିଲି, 'ଯଥାର୍ଥରେ ଏମାନେ ରାଜା ଜାତି' । ଆମ୍ଭମାନଙ୍କ ପକ୍ଷରେ ଯାହା ଯଥେଷ୍ଟଠାରୁ ଅଧିକ, ଏମାନଙ୍କ ନିକଟରେ ତାହା ଅକିଞ୍ଚିକର ଦାରିଦ୍ର୍ୟ । କୁଝଟିକା ନଭେମ୍ବର ମାସରେ ଲଣ୍ଡନ ସହରକୁ ଆଚ୍ଛନ୍ନ କରେ । ଏହା ଦେଖିବାକୁ ଦୁଇପ୍ରକାର, କୃଷ୍ଣବର୍ଣ୍ଣ ଓ ପୀତବର୍ଣ୍ଣ । ଯେଉଁ ସମୟରେ କୃଷ୍ଣବର୍ଣ୍ଣ କୁଜ୍ଝଟିକା ଦୁଇ ପ୍ରହରବେଳେ ଆସି ସହରକୁ ନିବିଡ଼ ଅନ୍ଧକାରରେ ଆଚ୍ଛନ୍ନ କରେ, ସେହି ସମୟରେ ତତ୍‌କ୍ଷଣାତ୍ ଗ୍ୟାସ ଆଲୋକ ସମସ୍ତ ସହରକୁ ଆଲୋକିତ କରେ । ଦିନ ଦୁଇପ୍ରହର ବେଳେ ରାତି ଦୁଇ ପ୍ରହର ପରି ବୋଧହୁଏ । ଏହି କୁଜ୍ଝଟିକା ସ୍ୱାସ୍ଥ୍ୟ ପକ୍ଷରେ ବିଶେଷ ଅନିଷ୍ଟକର ନୁହେଁ, ବିଶେଷତଃ ଏହି କୁଜ୍ଝଟିକା ଯେତେବେଳେ ଉପରେ ଥାଏ (ତଳକୁ ଆସି ଭୂମି ସ୍ପର୍ଶ କରେ ନାହିଁ) ତେତେବେଳେ ରାତ୍ରିର ଅନ୍ଧକାର ପରି ବୋଧହୁଏ । କିନ୍ତୁ ଲୋକସମାଗମ ଓ କାର୍ଯ୍ୟର ବିରାମ ହୁଏ ନାହିଁ କିମ୍ବା କୌଣସି କ୍ଷତି ହୁଏନାହିଁ । କିନ୍ତୁ ପୀତବର୍ଣ୍ଣର କୁଜ୍ଝଟିକା ଭୟାନକ , ଇଂରେଜମାନେ ଏହାକୁ ପିସୁପ (Pea-soup) ଅର୍ଥାତ୍ ରନ୍ଧାଡାଲି କହନ୍ତି । ଏହା କଣ୍ଠନଳୀକୁ ସ୍ପର୍ଶକରି ଶ୍ୱାସରୋଧ କରିବାର ଉପକ୍ରମ କରେ, ଏହି କୁଜ୍ଝଟିକାରେ ଗ୍ୟାସ ଆଲୋକ ବୃଥା, ଆଲୋକ ନିକଟରେ ଆଲୋକ ଦେଖାଯାଏ ନାହିଁ, ସମସ୍ତ ରାଜ ପଥର ଗାଡ଼ି ଘୋଡ଼ା ଲୋକ ଗମନାଗମନ ବନ୍ଦ ହୋଇଯାଏ, ଯେ ଯେଉଁଠାରେ ଯେଉଁ ଅବସ୍ଥାରେ ଥାନ୍ତି ତାଙ୍କୁ ସେହି ଅବସ୍ଥାରେ ସେହିଠାରେ ରହିବାକୁ ହୁଏ ।



## ବିଲାତର ଇଂରେଜ ଓ ଭାରତର ଇଂରେଜ

ପିତା ଏବଂ ବନ୍ଧୁଙ୍କ ନିକଟରୁ ଶୁଣିଥିଲି, ବିଲାତର ଇଂରେଜ ଓ ଭାରତର ଇଂରେଜ ଦିଓଟି ଭିନ୍ନ ଜାତି, ଅର୍ଥାତ୍ ଯେ କେହି ବିଲାତର ଇଂରେଜଙ୍କୁ ଦେଖିଅଛନ୍ତି ଏବଂ ସେମାନଙ୍କ ସହିତ ମିଶି ଅଛନ୍ତି, ସେମାନେ ଭାରତର ଇଂରେଜକୁ ଦେଖି ସେମାନଙ୍କ ସହିତ ଏମାନଙ୍କର କୌଣସି ସାଦୃଶ୍ୟ ଅଛି ଏହା ମନେ କରି ପାରିବେ ନାହିଁ । ପ୍ରତ୍ୟେକ ଜାତି ମଧ୍ୟରେ ସ୍ୱାତନ୍ତ୍ର ଏବଂ ବିଶେଷ ବିଶେଷ ଗୁଣ ରହିଅଛି, ସୁତରାଂ ଏକ ଇଂରେଜ ଜାତିକୁ ମୁଁ ଯେତେବେଳେ ଦୁଇ

ଇଂରେଜ ଜାତି ବୋଲି ନିର୍ଦ୍ଦେଶ କଲି, ତେତେବେଳେ ଏହି ଦୁଇ ଜାତି ମଧ୍ୟରେ କିରୂପ ପ୍ରଭେଦ ଅଛି, ତାହା ଆପଣମାନେ ନିମ୍ନଲିଖିତ ବର୍ଣ୍ଣନାରୁ ବୁଝିବେ ।

ଏ ଦେଶର ଇଂରେଜଙ୍କ ସମ୍ବନ୍ଧରେ ବେଶି କିଛି କହିବା ନିଷ୍ପ୍ରୟୋଜକ, କାରଣ ଉଚ୍ଚଠାରୁ ନିମ୍ନସ୍ଥ ରାଜକର୍ମଚାରୀ ଅର୍ଥାତ୍ ଡ଼େପୁଟୀବାବୁଙ୍କଠାରୁ କିରାଣୀ ପର୍ଯ୍ୟନ୍ତ' ପ୍ରତିଦିନ ଇଂରେଜମାନଙ୍କର ଭଦ୍ରତା ବିଶୁଦ୍ଧ ବ୍ୟବହାର ପ୍ରତ୍ୟହ ସହ୍ୟ କରୁଅଛନ୍ତି, ସେମାନଙ୍କୁ ଜାଣିବା ପାଇଁ କିଛି ଲେଖିବାର ଆବଶ୍ୟକ ନାହିଁ । ସେମାନେ ମୁଖରେ ଯେତେ ପ୍ରଶଂସା କରନ୍ତୁ ପଛକେ ମନରେ ସାହେବଙ୍କ ବ୍ୟବହାରରେ ବିରକ୍ତ ନହୋଇ ରହି ପାରନ୍ତି ନାହିଁ । ଅନ୍ତପୁର ମହିଳା ଓ ଅନ୍ୟାନ୍ୟ ଲୋକ ଯେଉଁମାନେ ଏ ଦେଶର ଇଂରେଜମାନଙ୍କ ବିଷୟରେ କିଛି ଜାଣନ୍ତି ନାହିଁ, ସେମାନଙ୍କ ସକାଶେ କିଛି ଲେଖିବା ଆବଶ୍ୟକ । ଅବଶ୍ୟ ଏଗୁଡ଼ିକ ସାଧାରଣ ନିୟମ । ଏଥିରେ ଅନେକ ନିପାତନ ଦୃଷ୍ଟ ହୁଏ । ସାଧାରଣତଃ ଦେଖାଯାଏ ଯେ ବିଲାତର ଇଂରେଜ, ଭାରତରେ ପଦାର୍ପଣ କରିବା ପର୍ଯ୍ୟନ୍ତ ନିଜ ଦେଶର ଗୁଣ ପରିତ୍ୟାଗ କରି ନଥାନ୍ତି । ଆଶ୍ଚର୍ଯ୍ୟର ବିଷୟ, କିଛିଦିନ ପରେ ସେମାନଙ୍କ ବ୍ୟବହାର ଦେଖି ମନରେ ହୁଏ, ଛଅ ହଜାର ମାଇଲ ସମୁଦ୍ରର ଲବଣାକ୍ତ ଜଳରେ ଆସି ମଧ୍ୟ ଯେଉଁ ଗୁଣରାଶି ଅକ୍ଷୁଣ୍ଣ ଥିଲା, ତାହା କିରୂପେ ଲୋପ ପାଇଲା ବିବେଚନା କଲେ ବୁଝିପାରୁଁ ଏହାର କାରଣ ଆମ୍ଭେମାନେ ନିଜେ । ଆମ୍ଭମାନଙ୍କର ଯଦି ଆତ୍ମସମ୍ମାନ ଜ୍ଞାନ ଥାନ୍ତା, ଆମ୍ଭେମାନେ ଯଦି ଇଂରେଜ ନିକଟରେ ସମତୁଲ୍ୟ ଭାବରେ କଥାବାର୍ତ୍ତା କହନ୍ତୁ, ତାହାହେଲେ ଇଂରେଜମାନେ କଦାଚ ନିଜ ଦେଶର ଗୁଣ ହରାନ୍ତେ ନାହିଁ । କାରଣ ସାହେବମାନେ ନିଜ ଦେଶକୁ ଫେରିଗଲେ ପୁଣି ଭଦ୍ର ହୁଅନ୍ତି ଏବଂ ଆମ୍ଭମାନଙ୍କ ଦେଶର ଉଚ୍ଚପଦସ୍ଥ କର୍ମଚାରୀ ମାନଙ୍କ ପ୍ରତି ଯେପରି ବ୍ୟବହାର କରନ୍ତି ଓ ଯେପରି ଭାଷା ପ୍ରୟୋଗ କରନ୍ତି ନିଜ ଦେଶର ନିଜ ଦାସଦାସୀଙ୍କ ପ୍ରତି ମଧ୍ୟ ସେପରି ବ୍ୟବହାର କରନ୍ତି ନାହିଁ । କାରଣ ସେ ଦେଶର ଚାକର ଚାକରାଣୀଙ୍କର ମଧ୍ୟ ଆତ୍ମସମ୍ମାନଜ୍ଞାନ ଅଛି, ତାହାର ଜ୍ୱଳନ୍ତ ଦୃଷ୍ଟାନ୍ତ ଆପଣ ମାନଙ୍କୁ ଜଣାଇବି ।

ଯେଉଁ ସମୟରେ ମୁଁ ଲଣ୍ଡନରେ ଗୋଟିଏ ଘର ଭଡ଼ା କରି ଦାସ ଦାସୀ ଘେନି ଥିଲି, ସେହି ସମୟରେ ଦିନକର ଘଟଣାରେ ମୁଁ ସେଠାରେ ଦାସ ଦାସୀଙ୍କର ଆତ୍ମସମ୍ମାନ ଜ୍ଞାନର ପରିଚୟ ବିଶେଷ ରୂପେ ପାଇଅଛି । ଦିନେ ମୋର ପ୍ରଧାନ ଦାସୀ ଆସି କହିଲା–

''ଆଜି ପାଞ୍ଚଜଣ ଦାସଦାସୀ ସମସ୍ତେ ମିଳି ମୋତେ ଜଣାଇଅଛନ୍ତି ଯେ ସେମାନେ ଚାଲିଯିବେ, ଏଠାରେ କାମ କରିବେ ନାହିଁ ।''

ମୁଁ କହିଲି ''ସେମାନେ କାହିଁକି ଚାଲିଯିବେ ।''

ପ୍ରଧାନ ଦାସୀ– ''ମୁଁ ଜାଣେ ନାହିଁ, ଆପଣ ସେମାନଙ୍କୁ ଡାକି ପଚାରନ୍ତୁ, ମାତ୍ର ସେମାନେ ଚାଲିଗଲେ ମୁଁ ଏକା କଣ କରିବି ? ମୁଁ ମଧ୍ୟ ସେମାନଙ୍କ ସଂଗରେ ଚାଲିଯିବି ।''

ମୁଁ ଆଉ ଜଣେ ଦାସୀକୁ ଡାକି ସେମାନଙ୍କର ଚାଲିଯିବାର କାରଣ ପଚାରିଲି । ସେ କହିଲା, ''ଏଠାରେ ଆମ୍ଭମାନଙ୍କର ସୁଖସ୍ୱଚ୍ଛନ୍ଦତା ନାହିଁ , ସେଥିପାଇଁ ଚାଲିଯିବୁ ।''

ମୁଁ– ''ତୁମ୍ଭମାନଙ୍କର ଖାଇବାପିଇବାର (ବିଲାତର ସମସ୍ତ ଚାକର ଚାକରାଣୀଙ୍କୁ ଖାଇବାକୁ ଏବଂ ରହିବାକୁ ସ୍ଥାନ ଦେବାକୁ ହୁଏ) କଷ୍ଟ ହେଉଅଛି ।''

ସେ କହିଲା– ''ନା, ଯେଉଁଠାରେ ଆତ୍ମସମ୍ମାନ ରହିବ ନାହିଁ, ସେଠାରେ କାର୍ଯ୍ୟ କରିବାକୁ ଚାହୁଁନା ?''

ମୁଁ– ''କାହିଁକି ଆତ୍ମସମ୍ମାନ ରହିବ ନାହିଁ ?''

ସେ କହିଲା–''ତୁମର ଯେଉଁ ଭାରତର ଚାକର ଜଣେ ଅଛି, ତାହାର ଯେତେବେଳେ କିଛି ଦରକାର ହୁଏ, ସେ ଭଦ୍ରଭାବରେ ମାଗେନାହିଁ, ହୁକୁମ କରେ (He never asks for any thing, but always demands for it) ଏଥିରେ ଆମ୍ଭମାନଙ୍କର ଆତ୍ମସମ୍ମାନର ହାନି ହୁଏ, ଆମ୍ଭେମାନେ ଏପରି ସ୍ଥାନରେ କାର୍ଯ୍ୟ କରିପାରିବୁଁ ନାହିଁ ।'' ଅନୁସନ୍ଧାନରେ ବୁଝିଲି ଯେ ଭାରତୀୟ ଚାକରଟି ସେମାନଙ୍କୁ କୌଣସି କାର୍ଯ୍ୟ କରିବାକୁ କହିଲାବେଳେ ''Please do this'' (ଅନୁଗ୍ରହ ପୂର୍ବକ ଏହାକର) ନ କହି କେବଳ ''do this''(ଏହା କର) ବୋଲି କହିଥିଲା । ଏଭଳି ସମ୍ବୋଧନ ଦସ୍ତୁରବିରୁଦ୍ଧ ଅଟେ ।

ମୁଁ ଦାସୀ ମୁଖରୁ ଏପରି କଥା ଶୁଣି ଭାବିଲି ଆମ୍ଭମାନଙ୍କ ଦେଶର ଦାସଦାସୀଙ୍କର ବା ମଧ୍ୟବିତ୍ତ ଲୋକଙ୍କ କଥା ଦୂରେ ଥାଉ, ଉଚ୍ଚ-ପଦସ୍ଥ ବ୍ୟକ୍ତିଙ୍କର ମଧ୍ୟ ଏହି ଦାସୀ ପରି ଆତ୍ମସମ୍ମାନ ଥାନ୍ତା, ତେବେ ଆମ୍ଭମାନଙ୍କ ଦେଶ ଏପରି ଅତ୍ୟାଚାର ପ୍ରପୀଡ଼ିତ ହୁଅନ୍ତା ନାହିଁ ।

ସେଠାର ଚାକର ଚାକରାଣୀମାନଙ୍କ କଥା କାହିଁକି ମୋ ମନରେ ଏପରି ଭାବରେ ମୁଦ୍ରିତ ହୋଇ ଯାଇଥିଲା, ତାହା ଚାକର ଚାକରାଣୀ ମାନଙ୍କ ଅବସ୍ଥାର ସବୁ କଥା ଶୁଣିଲେ ପାଠକ ପାଠିକାମାନେ ବୁଝି ପାରିବେ । ବିଲାତ ଶୀତ ପ୍ରଧାନ ଦେଶ, ସୁତରାଂ ସମସ୍ତଙ୍କ ପକ୍ଷରେ ରାତ୍ରି ଯାପନ ପାଇଁ ଘର ଆବଶ୍ୟକ , ତାହା ସମସ୍ତେ ବୁଝି ପାରିବେ । ତଥାପି ଆମ୍ଭମାନଙ୍କ ଦେଶର ଭିକାରୀ ଅପେକ୍ଷା ସେମାନେ ଦୁର୍ଭାଗ୍ୟ, ଭିକାରୀମାନଙ୍କର ଖଣ୍ଡିଏ କୁଡ଼ିଆଘର ଅଛି, କି ଯେଉଁଠାରେ ରହି ସେମାନେ ଦିନ କଟାନ୍ତି, କିନ୍ତୁ ସେ ଦେଶର ମୁନିବର ଗୃହ ବ୍ୟତୀତ ଅଧିକାଂଶ ଦାସଦାସୀଙ୍କର ରହିବାର ସ୍ଥାନ ନାହିଁ । ତହିଁରେ ପୁଣି ଆମ୍ଭମାନଙ୍କ ଦେଶ ପରି ଚାକରମାନେ ନିଜ ଇଚ୍ଛାରେ ଏକ ସ୍ଥାନରୁ ଯାଇ ଅନ୍ୟ ସ୍ଥାନରେ କାର୍ଯ୍ୟ କରି ପାରନ୍ତି ନାହିଁ, ସେମାନଙ୍କୁ ନୂଆ ମୁନିବ ଘରେ ଚାକିରି କରିବାକୁ ହେଲେ ପୁରୁଣା ମୁନିବର ଚିଠି ଦେଖାଇବାକୁ ହେବ, ନଚେତ୍ କାମ ପାଇବେ ନାହିଁ । ଏତଦ୍‌ବ୍ୟତୀତ ବିଲାତରେ ଅନେକ କୋମ୍ପାନୀ ଅଛି, ସେମାନେ ଲୋକମାନଙ୍କୁ ଦାସଦାସୀ ଯୋଗାନ୍ତି ଏବଂ ଦାସଦାସୀ କିପରି ଲୋକ ତାହା ବୁଝି ଚାକିରିସ୍ଥାନକୁ ପଠାନ୍ତି । ସୁତରାଂ ମୋର ଚାକରମାନେ ଚାଲିଯିବା



ଶୈଳବାଳା ମହିଳା ମହାବିଦ୍ୟାଳୟର ପ୍ରଥମ ଅଧକ୍ଷା
ସୁଧାଂଶୁବାଳା ହାଜ୍‌ରା (ଶୈଳବାଳା ଦାସଙ୍କ ଭଗ୍ନୀ)

ସମୟରେ ଭଲରୂପେ ଜାଣିଥିଲେ ମୁଁ କୋମ୍ପାନୀକୁ ସେମାନଙ୍କ ସମ୍ବନ୍ଧରେ ଭଲ ମନ୍ତବ୍ୟ ନଦେଲେ ସେମାନେ ଅନ୍ୟତ୍ର ଚାକିରି ପାଇବେ ନାହିଁ । କେବଳ ଏତିକି ନୁହେ ବିଲାତରେ ନିୟମ ଅଛି, ଚାକର ନିଜ ଇଚ୍ଛାରେ ଚାକିରି ଛାଡ଼ିଲେ ମୁନିବର ଏକ ସପ୍ତାହ ଆଗରୁ ଜଣାଇବ ଏବଂ ମୁନିବ ଚକରକୁ ଛଡ଼ାଇବାର ହେଲେ ଏକ ସପ୍ତାହ ଆଗରୁ ଜଣାଇବେ, ନଚେତ୍ ଚାକର ମୁନିବଙ୍କୁ କିମ୍ବା ମୁନିବ ଚାକରକୁ ଚାକରର ଏକ ସପ୍ତାହର ବେତନ ଟଙ୍କା ଦେବାକୁ ହେବ । ଏହି କାରଣରୁ ମୋର ଚାକର ଚାକରାଣୀମାନେ ସେମାନଙ୍କର ଏକ ସପ୍ତାହକୁ ବେତନ ଟ୭୫/- ଦେଇ ଚାଲିଗଲେ । ବର୍ତ୍ତମାନ ଆପଣମାନେ ବୁଝି ପାରୁ ଅଛନ୍ତି, ଯେ ଯେଉଁ ଦେଶର ଚାକର ଚାକରାଣୀମାନଙ୍କର ଆତ୍ମସମ୍ମାନଜ୍ଞାନ ଏତେ ଅଧିକ, ସେ ଦେଶରେ କେହି ଅଭଦ୍ର ବ୍ୟବହାର କରିବେ ନାହିଁ ।

ଆମ୍ଭମାନଙ୍କ ଦେଶର ଡେପୁଟିବାବୁ, କିରାଣୀ ବାବୁଙ୍କର କାର୍ଯ୍ୟ ପରିତ୍ୟାଗ କରି ଜୀବନଧାରଣ କରିବା ଯେପରି ସହଜ ସେ ଦେଶରେ ଚାକର ଚାକରାଣୀଙ୍କ ପକ୍ଷରେ ସେପରି ନୁହେଁ ମୁଁ ପୂର୍ବେ କହିଅଛି, ଏଠାର ଇଂରେଜ ଓ ସେଠାର ଇଂରେଜ ଦୁଇ ଜାତି, ଏଠାର ଇଂରେଜ ଦେଶକୁ ଫେରିଗଲେ ସେଠାର ଇଂରେଜ ଏମାନଙ୍କ ସହିତ ମିଶିବାକୁ ଚାହାନ୍ତି ନାହିଁ । ସେଠାର ଇଂରେଜଙ୍କ ଭଦ୍ରବ୍ୟବହାର ସ୍ୱାର୍ଥତ୍ୟାଗ, ସହାନୁଭୂତି ପ୍ରଭୃତି ଗୁଣ ମୋର ମନକୁ ବିଶେଷଭାବରେ ଆକୃଷ୍ଟ କରିଅଛି, ସେମାନଙ୍କ ନିକଟରୁ ଭଦ୍ର-ବ୍ୟବହାର ପାଇ ନ ଥିଲେ ସୁଦୂର ପ୍ରବାସରେ ଏତେଦିନ ରହି ପାରି ନ ଥାନ୍ତେ । ସେମାନେ ପର ପାଇଁ କିପରି ଚିନ୍ତା କରନ୍ତି, ଗୋଟିଏ କଥାରୁ ବୁଝି ପାରିବେ । କେମ୍ବ୍ରିଜରେ ପଢୁଥିବା ସମୟରେ ମୁଁ ଜଣେ ଭଦ୍ର ଇଂରେଜ ପରିବାର ସଙ୍ଗରେ ଥିଲି, ଦିନେ ଦେଖିଲି, (ସେହି ପରିବାରରେ) ମାଉସୀ ଝିଆରୀ ଦୁଇଜଣ ଦୁଇ ଖଣ୍ଡ ଚିଠି ଲେଖୁଅଛନ୍ତି, ମୁଁ ସେଠାକୁ ଯିବାରେ ମୋତେ କହିଲେ, (Tristan & Acuntia) ନାମକ ଦ୍ୱୀପକୁ ବର୍ଷରେ ଥରେ ଜାହାଜ ଯାଏ, ସୁତରାଂ ସେହି ଦ୍ୱୀପବାସୀମାନେ ବର୍ଷରେ ଥରେ ବନ୍ଧୁବର୍ଗଙ୍କ ନିକଟରୁ ଚିଠି ପାନ୍ତି । ଏହି ଜାହାଜ ଛଡ଼ା ସେଠାକୁ ଅନ୍ୟ କୌଣସି ଉପାୟରେ ଚିଠି ଯିବାର ବାଟ ନାହିଁ । ତେଣୁ ଜାହାଜ ସେଠାରେ ଯେଉଁଦିନ ପହଞ୍ଚେ, ଦ୍ୱୀପବାସୀମାନେ ଉତ୍ସବ ଓ ଆନନ୍ଦିତ ହୃଦୟରେ ପୋଷ୍ଟଫିସ୍‌କୁ ଦୌଡ଼ି ଆସନ୍ତି । ଯେଉଁମାନେ ଚିଠି ପାନ୍ତି ସେମାନେ ସମସ୍ତେ ଖୁସି ହୁଅନ୍ତି, ମାତ୍ର ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନଙ୍କର ବନ୍ଧୁବାନ୍ଧବ କେହି ପ୍ରବାସରେ ନାହିଁ ଯେ ସେମାନଙ୍କଠାରୁ ଚିଠି ପାଇବେ; ଏହିପରି ଦୁଇଜଣ ଲୋକଙ୍କ ପାଖକୁ ଆମ୍ଭେମାନେ ଦୁଇଖଣ୍ଡ ଚିଠି ଲେଖୁଅଛୁଁ । ଏହି ଚିଠି ଲେଖି ସାରି ତାହା ଉପରେ ଲେଖିଲେ ଯାର କୌଣସି ବନ୍ଧୁବାନ୍ଧବ ନାହିଁ, ସେ ଏହି ଚିଠି ନେବେ'' । ଚିଠି ଭିତରେ ଲେଖିଥିଲେ ''ତୁମ୍ଭେମାନେ ମନେ କରିବ ନାହିଁ ଯେ ତୁମ୍ଭମାନଙ୍କର କେହି ନାହିଁ, ଇଂଲଣ୍ଡ ପରି କ୍ଷୁଦ୍ର ଦ୍ୱୀପରେ ଈଶ୍ୱରଙ୍କ ନିକଟରେ ତୁମ୍ଭମାନଙ୍କ ପାଇଁ ପ୍ରାର୍ଥନା କରିବାକୁ ଲୋକ ଅଛନ୍ତି ।'' ଏହି ପତ୍ରରୁ ଇଂରେଜ ଜାତିର ଉଚ୍ଚମନର ପରିଚୟ ପାଇ ଭାବିଲା, ଯଦି ଆମ୍ଭମାନଙ୍କ

ଦେଶର ଲୋକମାନେ ପ୍ରତିବାସୀ ପ୍ରତି ଏପରି ବ୍ୟବହାର କରୁଥାନ୍ତେ ତାହା ହେଲେ କେତେ ମହତ୍ କାର୍ଯ୍ୟ ସାଧିତ ହୁଅନ୍ତା । କିନ୍ତୁ ଆମ୍ଭମାନଙ୍କ ଦେଶର ଲୋକମାନେ ଆପଣା ଆପଣା ସ୍ୱାର୍ଥ ଘେନି ଏତେ ବ୍ୟସ୍ତ ଯେ ଅନ୍ୟଦେଶ କଥା ଦୂରେ ଥାଉ ଆପଣା ସମାଜ ବା ଦେଶ ପାଇଁ କିଛି କରିବାକୁ ଚାହାନ୍ତି ନାହିଁ, ବରଂ ଅନ୍ୟ କେହି କିଛି କରୁଥିବାର ଦେଖିଲେ ତାହା ସମ୍ବନ୍ଧରେ ନାନା ପ୍ରକାର ଅପ୍ରିୟ କଥା କହିବାକୁ କୁଣ୍ଠିତ ହୁଅନ୍ତି ନାହିଁ ।

ଯେଉଁ ଦେଶର ଲୋକମାନେ ଅନ୍ୟ ଦେଶର ଲୋକଙ୍କୁ ନ ଜାଣି ସୁଦ୍ଧା କେବଳ ସେମାନଙ୍କ ମନରେ ଦୁଃଖ ଦେବା ପାଇଁ ଅଯାଚିତଭାବରେ ଚିଠି ଲେଖୁଅଛନ୍ତି, ସେହି ଦେଶର ଲୋକମାନେ ଆମ୍ଭମାନଙ୍କ ଦେଶକୁ ଆସି ଯେପରି ବ୍ୟବହାର କରନ୍ତି, ତାହାଦ୍ୱାରା ସେ ଦେଶର ଓ ଏ ଦେଶର ଇଂରେଜ ମଧ୍ୟରେ କେତେଦୂର ପାର୍ଥକ୍ୟ ଅଛି, ତାହା ସହଜରେ ବୁଝି ପାରିବେ । ସେ ଦେଶର ଲୋକମାନେ ଚାକରମାନଙ୍କୁ କିପରି ଭଲ ପାନ୍ତି, ତାହାର ମଧ୍ୟ ଗୋଟିଏ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରିବି । ଥରେ ମୁଁ ଜଣେ ଧନୀ ଲର୍ଡଙ୍କ ଭଉଣୀ ଘରେ ଅତିଥି ହୋଇଥିଲି , ଦିନେ ସେ ମୋତେ କହିଲେ ଆମ୍ଭେମାନେ ସମସ୍ତେ ଆଜି ଦିନକ ପାଇଁ ଏ ଘର ଛାଡି ଅନ୍ୟତ୍ର ବୁଲିବାକୁ ଯାଉଅଛୁଁ, କାରଣ ମୋତେ ଜଣେ ଦାସୀର ଆଜି ବିବାହ, ତାହାର ଘର ନାହିଁ, ସେଥିପାଇଁ ମୁଁ ତାକୁ ଆଜିକପାଇଁ ଏ ଘର ଛାଡି ଦେଇଅଛି, ସେ ଆଜି ଏଠାରେ ତାହାର ବନ୍ଧୁବାନ୍ଧବମାନଙ୍କୁ ଘେନି ଅମୋଦପ୍ରମୋଦ କରିବ । ମୁଁ ଏହି କଥା ଶୁଣି ଚମତ୍କୃତ ହେଲି । ଏଥିରୁ ଆପଣମାନେ ସହଜରେ ସେ ଦେଶର ଇଂରେଜଙ୍କ ଉଚ୍ଚମନର ପରିଚୟ ପାଇବେ ।

ବିଲାତରେ ମୁଁ ଯେଉଁ ଚଉଦ ମାସ ଥିଲି, ତାହା ମଧ୍ୟରେ ଧନୀ, ଦରିଦ୍ର, ଭଦ୍ର, ଅଭଦ୍ର, ସେ ଦେଶବାସୀ ସମସ୍ତଙ୍କ ନିକଟରୁ ଏତେ ଭଲ ବ୍ୟବହାର ପାଇଅଛି ଯେ ସେମାନଙ୍କୁ ସ୍ନେହ ନ କରି ରହି ପାରିନାହିଁ । ଶୀତକାଳରେ ଯେଉଁ ସମୟରେ ଦିନବେଳେ ସୂର୍ଯ୍ୟ ଦେଖାଯାଏ ନାହିଁ, ବାହାର ଅନ୍ଧକାର, ମନ ସ୍ୱଦେଶ ପାଇଁ ଅସ୍ଥିର ହୁଏ, ସେତେବେଳେ ମୁଁ ଯେଉଁଠାକୁ ଯାଇଅଛି ସେଠାରେ ସମସ୍ତଙ୍କ ସ୍ନେହ ସହାନୁଭୂତି ପାଇ ମନକୁ ସୁସ୍ଥିର କରି ପାରିଅଛି ।



# ବିଲାତପ୍ରବାସ

## ଉଇଙ୍କଓୟାର୍ଥ ହଲ (Winkworth Hall)

ଏହି ଉଇଙ୍କଓୟାର୍ଥ ହଲ୍ ଲଣ୍ଡନର ଉତ୍ତରରେ କିଲବର୍ଣ୍ଣ (Kilburn) ନାମକ ସ୍ଥାନରେ ଅବସ୍ଥିତ । ଏହି ସ୍ଥାନ ଆମ୍ଭମାନଙ୍କର ସାମୟିକ ଅବସ୍ଥାନ ପାଇଁ India office ଦ୍ୱାରା (ଇଣ୍ଡିଆ ଅଫିସ) ସ୍ଥିର ହୋଇଥିଲା । ପୂର୍ବେ କହିଅଛି, ଏହି ଗୃହଟି ଚାରିମହଲା, ଆମ୍ଭମାନଙ୍କ ଦେଶର ଚାରିମହଲାପରି ନୁହେଁ, ଏହାର ଛାତ ଚାଳଘର ପରି ଗଡ଼ାଣିଆ, ଛାତ କାଠ ବା ଟିଣରେ ତିଆରି । (ଗଡ଼ାଣିଆ ଛାତ କରିବାର କାରଣ ଏହି ଯେ ବରଫ ପଡ଼ିଲେ ଛାତ ଉପରେ ଜମା ନ ହୋଇ ଗଡ଼ିଯିବ ।) ଏହି ହଲର (ମେସ୍) ତଳ ମହଲାରେ ଖାଇବା ଘର, ରୋଷେଇ ଘର ଏବଂ ଦର୍ଶକମାନଙ୍କ ପାଇଁ ଗୋଟିଏ ବସିବାଘର ଅଛି । ଖାଇବା ଘରେ କେତେଗୁଡ଼ିଏ ମେଜ ଚଉକି ଅଛି, ତାହା ଅତି ସାମାନ୍ୟ, ସାମାନ୍ୟ ସ୍କୁଲରେ ଯେପରି ଟେବୁଲ ଚଉକି ଥାଏ ସେହିପରି । ଦ୍ୱିତଳକୁ ଉଠିବା ସିଢ଼ି ଏତେ ସଙ୍କୀର୍ଣ୍ଣ ଯେ ସେ ସିଢ଼ିରେ ଏକାବେଳେ ଦୁଇ ଜଣରୁ ବେଶି ଯାଇ ପାରିବେ ନାହିଁ । ସିଢ଼ି ଉପରକୁ ଉଠିଲେ ଦେଖିବ, ଛାତର ଦୁଇ ପାର୍ଶ୍ୱରେ ଶ୍ରେଣୀବଦ୍ଧ କୋଠରୀ, କୋଠାରୀଗୁଡିକର ଆୟତନ 10 × 8 ଫୁଟ' । ଆସନ୍ତୁ,ଆପଣମାନଙ୍କୁ ଥରେ ସେହି ଘର ଦେଖାଇ ଆଣିବି । ଘର ଭିତରେ ଏକପାର୍ଶ୍ୱରେ ଗୋଟିଏ ସାନ ତାରର ଖଟ, ତାହା ଏତେ କମ ଓସାର ଯେ କଡ଼ ଲେଉଟାଇବାକୁ ଗଲେ ମନୁଷ୍ୟ ପଡିଯିବ । ସେହି ଖଟରେ ବିଛଣା ଥାଏ । ଖଟ ପାର୍ଶ୍ୱରେ ବହିରଖିବାପାଇଁ ଗୋଟିଏ କାଠର ଆଲମାରି (Shelf), ପଢ଼ିବାପାଇଁ ଗୋଟିଏ ସାନ ମେଜ (ଆମ୍ଭମାନଙ୍କ ଦେଶରେ କୁରୁମ କାଠ ଯେପରି ଶସ୍ତା ଓ ହାଲୁକା ସେହିପରି ଶସ୍ତା ଓ ହାଲୁକା କାଠରେ ମେଜ ଇତ୍ୟାଦି ତିଆରି ।), ମେଜ ପାଖରେ ବସି ପଢ଼ିବାକୁ ଖଣ୍ଡେ ଚଉକି ଏବଂ ଦଉଡ଼ି ବୁଣା ଗୋଟିଏ ଆରାମ ଚଉକି (ଆରାମ ଚଉକିଟି ଏପରି ଯେ ଭାରି ଲୋକ ଜଣେ ଜଣେ ବସିଲେ ଭାଙ୍ଗିପଡ଼ିବ, ସରଳା ତହିଁ ରେଢ଼ି ବସିବାକୁ ସାହସ କରନ୍ତି ନାହିଁ ।), ଲୁଗା ରଖିବାକୁ ସାନ ଆଲମାରୀ ଅଛି, ଏହା ଇଂରେଜ ଛାତ୍ରୀମାନଙ୍କର ଲୁଗା ରଖିବାର ଉପଯୁକ୍ତ, କାରଣ ସେମାନେ ଗୋଟିଏ ସୁଟରେ ଏକବର୍ଷ କଟାଇ ପାରନ୍ତି, କିନ୍ତୁ ଯେଉଁ ଭାରତୀୟ ମହିଳାମାନଙ୍କର ପ୍ରତିଦିନ ଲୁଗା ବଦଳିବା ଅଭ୍ୟାସ, ସେମାନଙ୍କ ଲୁଗାଯାକ ଏହି ସାନ ଆଲମାରୀରେ ସମ୍ଭାଇବା ଅସମ୍ଭବ । ତଦ୍‌ଭିନ୍ନ ଲୁଗାରଖିବାପାଇଁ ଗୋଟିଏ ଅଲଗୁଣୀ ଅଛି, ମୁହଁ ଧୋଇବା ପାଇଁ ଗୋଟିଏ ସାନ ମେଜ ଏବଂ କାନ୍ଥରେ ଗୋଟିଏ ଆରସି ଅଛି । ଏହିସବୁ ଘରର ସରଞ୍ଜାମ ।

ବିଲାତର ଧନୀ ଗୃହର ଚାକର ଚାକରାଣୀମାନଙ୍କ ଘର ଓ ସେମାନଙ୍କ ଘରର ସରଞ୍ଜାମ ଏହା ଅପେକ୍ଷା ସୁନ୍ଦର ଓ ମୂଲ୍ୟବାନ୍ । ଆମ୍ଭେମାନେ ଏପରି ସୁସଜ୍ଜିତ ସ୍ଥାନ ପାଇ ମନେ ମନେ ଭାରତ ସରକାରଙ୍କୁ କେତେ ଧନ୍ୟବାଦ ଦେଲୁ । ଏଡ଼େ ସାନ ଘର, ତହିଁରେ ଗୋଟିଏ ସାନ ଖିଡ଼ିକି, ଏହା ପୁଣି ଆମ୍ଭମାନଙ୍କ ଦେଶର ଖିଡ଼ିକି ପରି ନୁହେଁ, ସବୁ ଫିଟି ପାରେ ନାହିଁ, ରେଳଗାଡ଼ିର କାଚ ଖିଡ଼ିକି ପରି, ଉପରକୁ ଉଠାଇଲେ ତଳକୁ ଅଧହାତେ ମେଲା ହୁଏ, ତଳକୁ ଖସାଇ ଦେଲେ ଉପରୁ ଅଧହାତେ ମେଲା ହୁଏ, ଘରର ଦୂଷିତ ବାୟୁ ଦୂର କରିବା ପାଇଁ ଏତିକି ବ୍ୟବସ୍ଥା ! ଆମ୍ଭେମାନେ ଭାରତରେ ସବୁବେଳେ ଉନ୍ମୁକ୍ତ ସ୍ଥାନରେ ଥାଇଁ ଏଠାକୁ ଆସି ମନେ ହେଉଅଛି ଯେ ନିଶ୍ୱାସ ରୁଦ୍ଧ ହୋଇଯିବ । ଥଣ୍ଡା ଯୋଗୁଁ ଯେତେବେଳେ କୁଅର ଖିଡ଼ିକି ବନ୍ଦକରିବାକୁ ହୁଏ, ସେତେବେଳେ ଆମ୍ଭେମାନେ କାରାଗାରରେ ଅଛୁ ବୋଲି ମନେହୁଏ । ପରେ ବୁଝିଲି, ଏହି ହଲକୁ ସ୍ୱଚ୍ଛଳ ଅବସ୍ଥାର ଝିଅମାନେ ଆସନ୍ତି ନାହିଁ, ଯେଉଁମାନଙ୍କୁ କାମ କରି ଖାଇବାକୁ ହେବ, କେବଳ ସେହିମାନେ ଆସନ୍ତି । ସ୍ଥୂଳ କଥା, ଆମ୍ଭମାନଙ୍କର ସେ ଘର ପସନ୍ଦ ହେଲା ନାହିଁ ଏବଂ ଏପରି ଘରେ କିପରି ପ୍ରବାସର ଦିନଗୁଡ଼ିକ କଟାଇବୁ ଏହା ଭାବି କିଛି ସ୍ଥିର କରିପାରିଲୁ ନାହିଁ ।

ତତ୍‌ପରେ ଏଠାର ଖାଇବାର ବ୍ୟବସ୍ଥା ଅତି ଜଘନ୍ୟ, ଏପରି ଖାଇବା ଇଂରେଜମାନଙ୍କୁ ସାଜେ, ସବୁ ଖାଦ୍ୟ କେବଳ ଜଳରେ ସିଦ୍ଧ, ତହିଁରେ ତେଲ, ଲୁଣ, ମସଲା କିଛି ନାହିଁ ! ୧୮ ତାରିଖ ସେପ୍ଟେମ୍ବର ସକାଳ ଓଳି ଯେତେବେଳେ ଖାଇବା ଘରକୁ ଗଲୁ, ଦେଖିଲୁ ଯେ ମେଜ ଉପରେ ନାନାପ୍ରକାର ଖାଦ୍ୟ ସାମଗ୍ରୀ ଅଛି, ମନେକଲୁଁ ଏଥି ମଧ୍ୟରେ ଆମ୍ଭମାନଙ୍କର ଖାଇବା ଭଳି କିଛି ଥିବ; କିନ୍ତୁ ଯେତେବେଳେ ମେଜ ପାଖରେ ବସିଲୁ, ଆମ୍ଭମାନଙ୍କର ଆହାର୍ଯ୍ୟ କିଛି ପାଇଲୁ ନାହିଁ । ଦେଖିଲୁ, ଦୁଇଦିନର ଥଣ୍ଡା ଗୋରୁ ଓ ଶୂକର ମାଂସ ସିଝା, ତିନି ଚାରିଦିନର ପଚାମାଛର ଚଟଣୀ, ପନିର, ମଖନ, ଜେଲି ରୁଟି, ଚା, କଫି, ଏଥିରୁ କଣ ଖାଇବୁ ସ୍ଥିର କରି ପାରିଲୁ ନାହିଁ । କିନ୍ତୁ ରାତିରୁ ଅନାହାରରେ ଅଛୁ, ଅତ୍ୟନ୍ତ କ୍ଷୁଧା ବୋଧ କରୁଥିଲୁ, ବାଧ୍ୟ ହୋଇ ଏକ ପିଆଲା ଚା, ସାମାନ୍ୟ କିଛି ରୁଟି ଓ ମଖନ ଖାଇଲୁ । ଏହି ସମୟର ଆହାରକୁ ଏମାନେ ପ୍ରାତଃଭୋଜନ କହନ୍ତି । ଦିନ ଗୋଟାଏବେଳେ ପୁଣି ଖାଇବା ସମୟ, ସକାଳବେଳପରି ସବୁ ଖାଦ୍ୟ ମେଜରେ ସଜ୍ଜିତ । ସକାଳବେଳେ ଆମ୍ଭେମାନେ ତିନିଜଣ ଭାରତ ମହିଳା ପୂର୍ବୋକ୍ତ ଖାଦ୍ୟ ଖାଇ ପାରିନ ଥିଲୁ ବୋଲି ଆମ୍ଭମାନଙ୍କ ପାଇଁ ଦିଓଟି ଭାତ ଓ ସେମାନଙ୍କ ଦେଶର ଟିକିଏ ଗୁଡ଼ରଖା ହୋଇଅଛି । ସେମାନେ ଆମ୍ଭମାନଙ୍କ ଦେଶର ଭାତ ରାନ୍ଧି, ଜାଣନ୍ତି ନାହିଁ, ଭାତ ରାନ୍ଧି ପେଜ ନ ଗାଳି ଥଣ୍ଡା ପାଣିରେ ପକାଇ ଦିଅନ୍ତି, ତତ୍‌ପରେ ତାହାକୁ ଛାଣି ନିଅନ୍ତି । ଏ ଭାତ ଯେ ରସନାର କିପରି ତୃପ୍ତିକର, ତାହା ପାଠକ ପାଠିକା ବୁଝିପାରିବେ । ମୁଁ ଏ ସବୁ କିଛି ଖାଇ ପାରିଲି ନାହିଁ, ସରଳା ଦିଓଟି ଭାତ ଓ ଗୁଡ଼ ଟିକିଏ ଖାଇଲେ, ମୁଁ ସାମାନ୍ୟ ରୁଟି ମଖନ ଖାଇ ଉଠିଲି । ଯେଉଁଠାରେ ହଲଟି ସ୍ଥାପିତ, ତାହାର ନିକଟବର୍ତ୍ତୀ କୌଣସି ସ୍ଥାନରେ ହୋଟେଲ

(ଭଦ୍ରଲୋକଙ୍କ ଖାଇବାର ଉପଯୁକ୍ତ ସ୍ଥାନ) ନାହିଁ, ଥିଲେ ଆମ୍ଭେମାନେ ସେଠାରେ ଖାଇ ଆସନ୍ତୁ ।

ଉପରଓଳି ଚାରିଟା ବେଳେ ଚା, ରୁଟି , ମଖନ ଓ କେକର (ପିଠା) ବ୍ୟବସ୍ଥା । ଏହି ସମୟରେ ଆମ୍ଭେମାନେ ପେଟ ପୂରାଇ ଖାଇଲୁ । ରାତ୍ର ସାତଟା ସମୟରେ ରାତ୍ରଭୋଜନ, ଆମ୍ଭେମାନେ ଆସିଛୁ ବୋଲି ଏ ସମୟରେ କୌଣସି ଅଖାଦ୍ୟ ନ ଦେଇ ମେଷ ମାଂସ ସିଝା, ଆଳୁ ଓ ବନ୍ଧାକୋବି ସିଝା ଏବଂ ଦୁଧର ଘନ ପାୟସ (Pudding) ଦେଲେ । ଯାହାହେଉ କଷ୍ଟରେ କିଛି ଖାଇଲୁ, ଭାବିଲୁଁ ଏପରି ଖାଦ୍ୟଖାଇ ଆମ୍ଭେମାନେ ବେଶିଦିନ ବଞ୍ଚିବୁ ନାହିଁ । ମୁଁ ସରଳାଙ୍କୁ କହିଲି, ''ତୁମ୍ଭ ଶରୀରରେ ଯେତେ ଚର୍ବିଅଛି (ସେ ଅତ୍ୟନ୍ତ ସ୍ଥୂଳକାୟ), ତହିଁରେ ତୁମ୍ଭେ ନ ଖାଇ ମାସେ ଚଳାଇ ନେଇ ପାରିବ, ମୋ ଦେହରେ କିଛି ନାହିଁ, ମୋର ଖାଇବାର ଅନ୍ୟ ନିଜ ବ୍ୟବସ୍ଥା ଶୀଘ୍ର ନକଲେ ମୁଁ ମରିଯିବି ।'' ଏହା କହି ଆମ୍ଭେମାନେ ଦୁଇଜଣ ଗୃହକର୍ତ୍ତ୍ରୀ ମିସ୍ କେଶିଙ୍କ ନିକଟକୁ ଗଲୁ । ମିସ୍ କେଶ ପ୍ରବୀଣା ସ୍ଥୂଳକାୟା, ମିଷ୍ଟଭାଷିଣୀ, ଅନେକ ପରିମାଣରେ ଆମ୍ଭମାନଙ୍କ ଦେଶର ସାନ୍ତ ମା ବୁଢ଼ୀପରି । ସେ କଥାରେ ଏପରି ମିଷ୍ଟଭାଷିଣୀ ଯେ ଦେଖିଲେ ମନରେ ହୁଏ ଯେ ସବୁବେଳେ ଆମ୍ଭମାନଙ୍କ ସୁଖ ସ୍ୱଚ୍ଛନ୍ଦତା ପାଇଁ ଭାବୁଛନ୍ତି, ପ୍ରାୟ ସବୁବେଳେ ଯାତ୍ରୀମାନଙ୍କ ନିକଟରେ କହନ୍ତି, ''ଏହି ଯେ ତିନିଜଣ ଭାରତରୁ ଆସିଅଛନ୍ତି, ମୁଁ ଏମାନଙ୍କୁ କଣ ଖାଇବାକୁ ଦେବି, କଣ କଲେ ଏମାନେ ଘର ପରି ମନେ କରିବେ, ତୁମ୍ଭେମାନେ କହି ପାରିବ ? ସେମାନଙ୍କ ପାଖରୁ କିଛି ବୁଝିଛ ?'' ମାତ୍ର ଆମ୍ଭେମାନେ ତାଙ୍କୁ ଭଲରୂପେ ବୁଝାଇ ଦେଇଥିଲୁ ଯେ ପ୍ରାତଃକାଳରେ କିଛି ଡିମ୍ବ ଏବଂ ମଧ୍ୟାହ୍ନରେ ମାଛ ଭାତ ଛଡ଼ା ଆମ୍ଭମାନଙ୍କର ବିଶେଷ କିଛି ଦରକାର ନାହିଁ, ଅଥଚ ଏତେ କହିବା ପରେ ଟେବୁଲ ପାଖକୁ ଯାଇ ଦେଖୁଁ ଯେ ପୂର୍ବବତ୍ ପ୍ରତିଦିନ ସେହି ଅଣ୍ଡା ଶୂକର ଓ ଗୋରୁ ମାଂସ ସମଭାବରେ ବିରାଜିତ । ତାହା ପୁଣି ଏଡ଼େ ପତଳା କରି କାଟି ଛାତ୍ରୀମାନଙ୍କୁ ଦେଇଥାନ୍ତି ଯେ ଆମ୍ଭମାନଙ୍କ ଦେଶର କେଉଟୁଣୀମାନେ ମାଛ କାଟିବାରେ ଏହାଙ୍କ ନିକଟରେ ହାରିଯିବେ । ମୁଁ ମିସ୍ କେଶଙ୍କୁ କହିଲି, ''ଆମ୍ଭେମାନେ ତୁମ୍ଭଙ୍କୁ ଆଉ କଷ୍ଟ ଦେବାକୁ ଇଚ୍ଛା କରୁନାହିଁ ଅନୁଗ୍ରହ କରି ଯଦି ଅନୁମତି ଦିଅ ମୁଁ ଓ ସରଳା ପ୍ରତିଦିନ ଆମ୍ଭମାନଙ୍କପାଇଁ କିଛି ରାନ୍ଧନ୍ତୁ ।'' ସେ ଶୁଣି କହିଲେ, ''ଅତି ଉତ୍ତମ, କିନ୍ତୁ ମୋର ଗେଷେଇ ଘରେ ସବୁବେଳେ କାମ ଲାଗି ରହିଛି, ତୁମ୍ଭେ ଯଦି ରାତ୍ର ୮ଟା ପରେ ରାନ୍ଧି ସେ ରନ୍ଧନ ଦ୍ରବ୍ୟ ତା ପରଦିନ ଖାଇପାର; ତେବେ ମୋର କୌଣସି ଆପତ୍ତି ନାହିଁ । (ରାତ୍ର ୭ ଟା ସମୟରେ ରାତ୍ର ଭୋଜନ ହୁଏ, ସୁତରାଂ ଆମ୍ଭେମାନେ ୮ଟା ପରେ ରାନ୍ଧି ତାହା ସେହିଦିନ ଖାଇ ପାରିବୁ ନାହିଁ) ମୁଁ ଏହି କଥାରେ ରାଜି ହୋଇ ସପ୍ତାହରେ ତିନିଦିନ ରାନ୍ଧିବାର ବନ୍ଦୋବସ୍ତ କଲି । ଏହି ରୂପେ ଅଖାଦ୍ୟ ନଖାଇ କୌଣସି ପ୍ରକାରେ ଆମ୍ଭେମାନେ ଦିନ କଟାଇଲୁଁ ।

ଇଣ୍ଡିଆ ଅଫିସ (ଇଂଲଣ୍ଡ) କଣ ବୁଝି ଯେ ଏଠାରେ ଆମ୍ଭମାନଙ୍କର ରହିବାର ବ୍ୟବସ୍ଥା କଲେ ବୁଝି ପାରିଲି ନାହିଁ, ଭାରତ ସରକାର (ଭାରତର ବଡ଼ଲାଟ) ଦୁଇଜଣ ଛାତ୍ରୀଙ୍କୁ (ଅର୍ଥାତ୍ ସରଳା ଓ ଫାଇଜୀଙ୍କୁ) ଶିକ୍ଷା ପ୍ରଣାଳୀ ଶିଖିବା ପାଇଁ ଇଂଲଣ୍ଡକୁ ପଠାଇଛନ୍ତି କିନ୍ତୁ ଭାରତ ଅଫିସ ଜାଣେନାହିଁ ଏହି ଛାତ୍ରୀମାନେ କେଉଁଠାରେ, କେତେଦିନ ପାଇଁ କି ଶିକ୍ଷାଲାଭ କରିବାକୁ ଆସିଛନ୍ତି!! ଆମ୍ଭମାନଙ୍କ ଫାଇଜୀ ଜୀବୀ ଲଣ୍ଡନରେ ପହଞ୍ଚି ଯେତେବେଳେ ଭାରତ ଅଫିସକୁ ବୃତ୍ତି ମାଗି ପଠାଇଲେ ସେଠାରୁ ଉତ୍ତର ଆସିଲା, "ଭାରତର ଛାତ୍ରୀମାନଙ୍କ ସମ୍ବନ୍ଧରେ ଲେଖା ହୋଇଅଛି, ଉତ୍ତର ଆସିଲେ ବୃତ୍ତି ପାଇବ ଉତ୍ତର ନ ଆସିବା ପର୍ଯ୍ୟନ୍ତ ଯେଉଁଠାରେ ଅଛ ସେହିଠାରେ ରହିବ।" ମୁଁ ବୁଝିଲି ସରକାରଙ୍କ ବୃତ୍ତି ଘେନି ଲଣ୍ଡନକୁ ଆସିବା ସୁଖକର ନୁହେଁ। ମନେ କରିଥିଲି, ଏମାନେ (ସରଳା ଓ ଫାଇଜୀ ବୀବୀ)ଭଲ ସ୍ଥାନରେ ରହିବେ, ଭଲ କଲେଜରେ ପଢ଼ିବେ, ମାତ୍ର ତାହା ଭୁଲ କାରଣ ବଙ୍ଗୀୟ ସରକାରଙ୍କ ଡ଼ିରେକ୍ଟର ଶିକ୍ଷା ପ୍ରଣାଳୀ ଶିକ୍ଷା ନିମନ୍ତେ ଇଂଲଣ୍ଡର କେଉଁ କଲେଜ ଭଲ ତାହା ଜାଣି ନଥିଲେ। ତାଙ୍କୁ ଏକଥା ଜଣା ନଥିବାରୁ ସେ ଷ୍ଟେଟ ସେକ୍ରେଟାରୀ ମର୍ଲି ସାହେବଙ୍କ ଉପରେ ଛାତ୍ରୀମାନଙ୍କ ଭାର ଅର୍ପଣ କରିଥିଲେ। ଭାରତ ଅଫିସ୍ ଭଲ ମନ୍ଦ କିଛି ନ ବୁଝି ଛାତ୍ରୀ ମାନଙ୍କୁ ମେରିଆ ଗ୍ରେ (Meria Gray) କଲେଜକୁ ପଠାଇ ଦେଲେ। ଭାରତର ଏହି ଛାତ୍ରୀମାନଙ୍କ ତତ୍ତ୍ୱାବଧାନର ଭାର ଏଠାର ପୋଲିଟିକେଲ ଏଣ୍ଟଟ ସାର୍ କର୍ଜନ ଏୟାଲିଙ୍କ (Political Agent) Sir Cuzzon Wylli) ଉପରେ ନ୍ୟସ୍ତ ହେଲା। ଏ ଅତି ଭଦ୍ର ଏବଂ ମୋର ବନ୍ଧୁ , ମୁଁ ଏହାଙ୍କ ଘରେ ଅନେକ ଥର ନିମନ୍ତ୍ରିତ ହୋଇଅଛି। ଏହାଙ୍କ ସ୍ତ୍ରୀ ଲେଡ଼ି ଓୟାଲ ଅତି ଉତ୍ତମ ଲୋକ।

ବର୍ତ୍ତମାନ ଏହି ହଲ୍‌ର ଛାତ୍ରୀମାନଙ୍କ ବିଷୟରେ କିଛି କହିବା ଆବଶ୍ୟକ। ଏଠାରେ ପଚିଶଟି ଭଦ୍ର ଅଭଦ୍ର ସୁଶ୍ରୀ କୁଶ୍ରୀ, ବିଦ୍ୱାନ ମୂର୍ଖ ବାଳିକା ଅଛନ୍ତି। ଏମାନଙ୍କ ମଧ୍ୟରୁ ପୂର୍ବେ କେହି ଭାରତ ମହିଳା ଦେଖି ନାହାନ୍ତି। ଆଶ୍ଚର୍ଯ୍ୟର ବିଷୟ ଏମାନେ ବିଶ୍ୱବିଦ୍ୟାଳୟର ଉପାଧିଧାରଣା ହୋଇ ଭାରତ ସମ୍ବନ୍ଧରେ ଅତି ଅଜ୍ଞ। ମୁଁ ଦେଖିଲି, ଆମ୍ଭେମାନେ ଭାରତରେ ବସି, ଇଂଲଣ୍ଡର ରାଜନୀତି, ଶାସନ ପ୍ରଣାଳୀ, ସ୍କୁଲ କଲେଜ ପ୍ରଭୃତି ସମ୍ବନ୍ଧରେ ଯାହା ଜାଣୁ, ଏମାନେ ଭାରତ ସମ୍ବନ୍ଧରେ ତାହାର ଶତାଂଶରୁ ଏକାଂଶ ସୁଦ୍ଧା ଜାଣନ୍ତି ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ। ପ୍ରଥମେ ଯେତେବେଳେ ଆମ୍ଭେମାନେ ଏମାନଙ୍କ ସହିତ ଆଳାପ କଲୁ, ବୁଝିଲୁଁ ଭାରତର ନର ନାରୀ ଅସଭ୍ୟ ଜନ୍ତୁ ବିଶେଷ ବୋଲି ଏମାନଙ୍କ ଧାରଣା ଆମ୍ଭମାନଙ୍କ ଆଡ଼କୁ କୌତୁହଳ ନେତ୍ରରେ ଚାହିଁ ଦେଖନ୍ତି। ଆମ୍ଭମାନଙ୍କ କଥା ବାର୍ତ୍ତା ଆଚାର ବ୍ୟବହାର ଶେଷରେ ଏମାନେ ବୁଝିପାରିଲେ ଯେ ଆମ୍ଭେମାନେ ସେମାନଙ୍କ ଅପେକ୍ଷା କୌଣସି ଅଂଶରେ ହୀନ ନୋହୁଁ ଏବଂ ଏକଥା ପ୍ରକାଶ କରିବାକୁ ମଧ୍ୟ କୁଣ୍ଠିତ ହେଲେନାହିଁ। ମୁଁ ଯେତେବେଳେ ଦର୍ପର ସହିତ ଏମାନଙ୍କ ନିକଟରେ ଦେଶର ପୁରାତନ ଗୌରବର କଥା, ଶିକ୍ଷାର କଥା କହେଁ, ସେତେବେଳେ ମୋର ପିତାଙ୍କର ଗୋଟିଏ ଅବି ସୁନ୍ଦର ଉପଦେଶ ମନରେ ପଡେ । ପିତା ମୋତେ ଲେଖିଥିଲେ,

“ମୋର ପ୍ରିୟ କନ୍ୟା ତୁମ୍ଭେ ସବୁବେଳେ ମାତୃଭୂମି ପ୍ରତି କର୍ତ୍ତବ୍ୟ ସ୍ମରଣ କରିବ । ବନ୍ଧୁଭାବରେ କ୍ରୀଡ଼ା ସହଚରୀ ବା ସହପାଠିକାରୂପେ ଯେତେବେଳେ ଯେଉଁମାନଙ୍କ ସହିତ ମିଶିବ, ତୁମ୍ଭର ବ୍ୟବହାର ଯେପରି ସେଠାର ଲୋକମାନଙ୍କ ମନରେ ଭାରତ ମହିଳାଙ୍କ ସମ୍ବନ୍ଧରେ ଉଚ୍ଚ ଭାବ ଜାଗ୍ରତ କରାଏ । ସ୍ନେହ, ଦୟା, ସହିଷ୍ଣୁତା ପବିତ୍ରତା ଆତିଥେୟତା ପ୍ରଭୃତି ଭାରତ ରମଣୀର ପ୍ରଧାନ ଭୂଷଣ, ସେହି ସମସ୍ତ ଗୁଣ ଯେପରି ଇଂରେଜ ମହିଳାମାନେ ତୁମ୍ଭଠାରୁ ଶିଖି ପାରନ୍ତି । ଧର୍ମ ସେମାନଙ୍କର ପ୍ରଧାନ ଭୂଷଣ । ଧର୍ମସମ୍ବନ୍ଧୀୟ ଏବଂ ସାମାଜିକ କୁସଂସ୍କାରରୂପ ଦୁର୍ଗ ପ୍ରାଚୀରରେ ଭାରତ ମହିଳା ଏପରି ଭାବରେ ଆପଣାକୁ ଆବଦ୍ଧ କରି ରଖିଅଛନ୍ତି ଯେ ଆଜି ପର୍ଯ୍ୟନ୍ତ ଅନ୍ୟ କୌଣସି ଧର୍ମ ସମ୍ପୂର୍ଣ୍ଣରୂପେ ସେ ପ୍ରାଚୀର ଭେଦ କରିପାରୁନାହିଁ । ଏଥିରୁ ଭାରତ ମହିଳାର ଆଧ୍ୟାତ୍ମିକ ଓ ସାମାଜିକ ବଳ କେତେ ଅଧିକ, ତାହା ବୁଝିପାରିବ । ତୁମ୍ଭର ଜୀବନ ଯେପରି ସେଠାରେ ସମସ୍ତଙ୍କୁ ଭାରତ ମହିଳାର ଗୋଟିଏ ଆଦର୍ଶ ଛବି ଦେଖାଇ ପାରେ । ମୁଁ ମୋର ଏହି ବୃଦ୍ଧ ବୟସରେ କିଛି ଆଶା କରେ ନାହିଁ, କେବଳ ହୃଦୟର ନିଭୃତ ସ୍ଥଳରେ ଏତିକି ଆଶା ରଖିଛି, ତାହା ଏହି ଯେ (ଏହା ଅନ୍ୟ ନିକଟରେ ଅଳୀକ ବୋଧ ହୋଇପାରେ, ମାତ୍ର ତୁମ୍ଭେ ତାହା ଜାଣ) ତୁମ୍ଭର ଜୀବନ ଇଂଲଣ୍ଡର ଚକ୍ଷୁରେ ଭାରତ ମହିଳାଙ୍କୁ ଗୋଟିଏ ଉଚ୍ଚସ୍ଥାନ ଦେଉ । ଇଂରେଜମାନଙ୍କ ମନର ଧାରଣା ଯେ ଏ ଦେଶର ପୁରୁଷମାନେ ସ୍ତ୍ରୀମାନଙ୍କ ପ୍ରତି ଦାସୀ ପରି ବ୍ୟବହାର କରନ୍ତି ଏବଂ ସେମାନଙ୍କୁ ସମ୍ମାନ ଚକ୍ଷୁରେ ଦେଖନ୍ତି ନାହିଁ । ଆଶା କରେ, ତୁମ୍ଭେ ଏ ସବୁ ଭ୍ରାନ୍ତି ମଧ୍ୟ ସେମାନଙ୍କ ମନରୁ ଦୂର କରିବ ।”

ମୁଁ ସର୍ବଦା ପିତାଙ୍କ ମଧୁର ଉପଦେଶ ସ୍ମରଣ ରଖି ଛାତ୍ରୀବୃନ୍ଦଙ୍କ ସହିତ କଥାବାର୍ତ୍ତା କହେ । କ୍ରମେ ଏହି ସବୁ ଛାତ୍ରୀମାନଙ୍କ ମଧ୍ୟରୁ କୁମାରୀ ମେରୀ ମାର୍ଶଲଙ୍କ ସହିତ ସରଳାଙ୍କର ଓ ମୋର ବିଶେଷ ବନ୍ଧୁତ୍ୱ ଜନ୍ମିଲା । ସେ ଏମ୍. ଏ. ପାସ କରି ଆମ୍ଭମାନଙ୍କପରି ଶିକ୍ଷାପ୍ରଣାଳୀ ଶିଖୁଥିଲେ, ସେ ସର୍ବଦା ଆମ୍ଭମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ କରନ୍ତି ଓ ଆମ୍ଭମାନଙ୍କର ତତ୍ତ୍ୱ ନିଅନ୍ତି । ତାଙ୍କର ଅମାୟିକ ବ୍ୟବହାରରେ ସରଳା ଓ ମୁଁ ମୋହିତ ହୋଇଗଲୁ । ଏହି ହଲରେ କୁମାରୀ ମାର୍ଶଲ ଆମ୍ଭମାନଙ୍କର ପ୍ରକୃତ ବନ୍ଧୁଥିଲେ ।

ମୋର ଶାରୀରିକ ଅସୁସ୍ଥତାପାଇଁ ମୁଁ ଗୋଟିଏ ଦାସୀ ରଖିଲି, ସେ ଗୋଟିଏ ବୁଢ଼ୀ ମେମ୍ । ପାଠକ ପାଠିକା ! ମନେ କହିବେ ନାହିଁ ଯେ ଇଂରେଜମାନେ ଆମ୍ଭମାନଙ୍କ ଦେଶରେ ଯେପରି ଥାନ୍ତି, ଏଠାରେ ସମସ୍ତେ ସେହିପରି ଥାନ୍ତି । ଏମାନଙ୍କ ମଧ୍ୟରୁ ଅନେକେ ଏଠାର ଚାକର ଚାକରାଣୀ ଶ୍ରେଣୀରୁ ଆମ୍ଭମାନଙ୍କ ଦେଶକୁ ଯାନ୍ତି । ଅନେକ ସମୟରେ ଏଠାର ଇଂରେଜ ଚାକର ଚାକରାଣୀଙ୍କ ବ୍ୟବହାର ଦେଖି ମନେ ହୁଏ, ଏ ଶ୍ରେଣୀଠାରୁ ମଧ୍ୟ ନୀଚ ଶ୍ରେଣୀର ଇଂରେଜମାନେ ଆମ୍ଭମାନଙ୍କ ଦେଶକୁ ଯାନ୍ତି । କାରଣ ଏଠାର ଚାକର ଚାକରାଣୀ ମାନେ ବେଶ ଭଦ୍ରତା ଜାଣନ୍ତି । ମୋର ବୁଢ଼ୀ ମେମ ଦାସୀର ବୟସ ଷାଠିଏ ବର୍ଷ ହେବ, ଭଲ କରି ଶୁଣିପାରେ ନାହିଁ, ସବୁବେଳେ ଗୋଡ଼ରେ ଜୋତା ମୋଜା ଓ ସର୍ବାଙ୍ଗରେ ମେମ୍

ପୋଷାକ । ଏହାକୁ ଘେନି ସରଳା ଓ ମୁଁ ସମୟ ସମୟରେ କୌତୁକ କରୁ । ଏହି ମେମ୍ ଦାସୀକୁ ପ୍ରତି ସପ୍ତାହରେ ଟ୧୬ଙ୍କା ଲେଖାଏଁ ବେତନ ଦେବାକୁ ହୁଏ, କିନ୍ତୁ ବେତନର ଉପଯୁକ୍ତ କିଛି କାର୍ଯ୍ୟ କରେ ନାହିଁ । ବିଲାତରେ ଦାସ ଦାସୀଙ୍କ ବେତନ ଆମ୍ଭମାନଙ୍କ ଦେଶର ବଡ଼ ବଡ଼ କିରାନୀ ଓ ଡେପୁଟିବାବୁଙ୍କ ବେତନ ଅପେକ୍ଷା ଅଧିକ । ମୋର ମେମ୍ ଦାସୀ ବୁଢ଼ୀ ବୋଲି ତାକୁ ଅଳ୍ପ ବେତନ ଦେବାକୁ ହୁଏ । ରାତିରେ ବିଛଣାରେ ଶୋଇ ଏହି ବୁଢ଼ୀ ନିକଟରେ ମୁଁ ଯେତେବେଳେ ଭାରତର ଐଶ୍ୱର୍ଯ୍ୟ କଥା କହେଁ, ବୁଢ଼ୀ ଶୁଣି ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଏ । ସମସ୍ତ ଦିନ ପରେ ଯେତେବେଳେ କମ୍ବଳ ଘୋଡ଼ିହୋଇ ବୁଢ଼ୀ ସହିତ ଗଳ୍ପ କରେ, କେତେବେଳେ କିଛିକ୍ଷଣପାଇଁ ଆପଣାର ଦୁଃଖ ଭୁଲିଯାଏ ।

ଫାଇଜିବୀ ଏଠାରେ ଛାତ୍ରୀମାନଙ୍କ ସହିତ ମିଶି ଆପଣାର ପ୍ରତିପତ୍ତି କରିନେଲେ । ତାଙ୍କର ଭାବ ଭଙ୍ଗୀ, ଆଚାର ବ୍ୟବହାର ଦେଖି ଛାତ୍ରୀମାନଙ୍କ ମନରେ ଧାରଣା ହେଲା, ଫାଇଜୀବିବି କୌଣସି ନବାବ ପରିବାରରୁ ଆସିଅଛନ୍ତି ଏବଂ ସେ ମଧ ତାହା ପ୍ରକାଶ କରିବାକୁ ତ୍ରୁଟି କରନ୍ତି ନାହିଁ; ବୃତ୍ତି ଗ୍ରହଣ କରି ସେ ଗଭର୍ଣ୍ଣମେଣ୍ଟଙ୍କୁ ବିଶେଷ ଅନୁଗୃହୀତ କରିଅଛନ୍ତି, ଏହା ଛାତ୍ରୀମାନଙ୍କ ନିକଟରେ ପ୍ରକାଶ କରନ୍ତି । ଆହୁରି ମଧ କହନ୍ତି ଯେ ଭାରତରେ ବର୍ତ୍ତମାନ ଶିକ୍ଷାର ଶୈଶବାବସ୍ଥା, ଭାରତର ଶିକ୍ଷା ତାଙ୍କ ଉପରେ ବହୁ ପରିମାଣରେ ନିର୍ଭର କରେ ।

ହଲର ଅପର ପାର୍ଶ୍ୱରେ ମେରିଆ ଗ୍ରେ ଟ୍ରେନିଙ୍ଗ କଲେଜ (Maria Gray Training College) ; ଏଠାରେ ପଚାଶ ଜଣ ଛାତ୍ରୀ ପଢ଼ନ୍ତି, ଆମ୍ଭେମାନେ ପ୍ରଥମେ ଶିକ୍ଷାରେ ମନଃସଂଯୋଗ କରି ପାରିଲୁ ନାହିଁ, କାରଣ ମନ ସବୁବେଳେ ଦେଶପାଇଁ କାନ୍ଦୁ ଥିଲା । ଏହି କଲେଜରେ ମୁଁ କେବଳ ଦୁଇମାସ ମାତ୍ର ଥିଲି, ଦିନେ ଲାଇବ୍ରେରୀରେ (Library) ବସି ସରଳା ଓ ମୁଁ ପଢ଼ିବାକୁ ଯାଉଛୁଁ, ଏପରି ସମୟରେ ମୋର ସଙ୍ଗିନୀ ମୋତେ କହିଲେ, ''ଦୁଇବର୍ଷ ପରେ ଆମ୍ଭେମାନେ ଯେତେବେଳେ ଦେଶକୁ ଫେରିଯିବା, ରେଳଗାଡ଼ି ହାବଡ଼ି ଷ୍ଟେସନରେ କେଉଁ ସମୟର ପହୁଞ୍ଚିବ ?'' ମୁଁ କହିଲି, ''ମରିବା ବଞ୍ଚିବା ତାହାର କିଛି ଠିକଣା ନାହିଁ, ବର୍ତ୍ତମାନ ଦେଶକୁ ଫେରି ଯିବାର ସମୟ କିପରି କହିବି ?'' ତତ୍‌ପର ପଢ଼ାରେ ମନଃସଂଯୋଗ କରି ନ ପାରି ଦୁଇ ଜଣ ଲାଇବ୍ରେରୀରୁ ବାହାରି ହଲକୁ ଗଲୁଁ ।

ପ୍ରଥମେ କହିଅଛି, ମୋର ଶରୀର ଦୁର୍ବଳ ଥିଲା; ଶୀତର ପ୍ରାରମ୍ଭରେ ଲଣ୍ଡନକୁ ଆସିଅଛି, ସୁତରାଂ ଦୁର୍ବଳ ଶରୀର ଶୀତର ଆଧିକ୍ୟ ଯୋଗୁଁ ଅଧିକ ଦୁର୍ବଳ ବୋଧ ହେଲା; ମୋର ନିଜ କୋଠରିରେ ଅଧିକାଂଶ ସମୟ ରାବଣର ଚିତା ପରି ଅଗ୍ନି ଜଳାଇ ଘରକ ଗରମ ରଖିବାକୁ ହେଉଥିଲା,ବେଶି ଦିନ ଏପରି ଅବସ୍ଥାରେ ରହିଲେ କୌଣସି କଠିନ ପୀଡ଼ା ହୋଇପାରେ କିନ୍ତୁ ସେଠାର ଜଣେ ଭଲ ଡାକ୍ତର ସାର୍ ଟମାସ୍ ବାର୍ଲୋଙ୍କ (Sir Thomas Barlow) ନିକଟକୁ ଗଲି । ସେ ମୋତେ ଦେଖି କହିଲେ, ''କିଏ ପରାମର୍ଶ ଦେଇ ତୁମ୍ଭକୁ ଏ ସମୟରେ ଶୀତପ୍ରଧାନ ଦେଶକୁ ପଠାଇଅଛି ? ମୋ କଥା ମାନି ନିଜ ଦେଶକୁ ଫେରି ଯାଅ,

